# କୀର୍ତ୍ତି ସାର ।



୰ କବି ମହେଶ୍ୱର କବିଚନ୍ଦ୍ରଙ୍କ

ଦ୍ୱାରା ବିରଚିତ ।

ଶ୍ରୀ ପଦ୍ମଲବ କବିଙ୍କ ଯତ୍ନରେ

ଷାଲୋଇକିଲା, କବିକୁଟୀର ପୁସ୍ତକ ଗାଥିରୁ

ପ୍ରଥମବାର ପ୍ରକାଶିତ ।

**Printer:-R. N. Rath,**

**SATYABADI PRESS.**

**PURI.**

**1925**

ମୂଲ୍ୟ ଟ ୦ ୫ ଥଠଅଣା ମାତ୍ର

# ନିବେଦନ

ସିଂହକୁଳର ଅତୀତ ଗୌରବକୁ ଆଶ୍ରୟ କରି ଏ କାବ୍ୟ ରଚନାଦ୍ୱାରା କବି ନିଜ ଗୁଣଗ୍ରାହିତାର ପରିଚୟ ଦେଇ ଅଛନ୍ତି । ଐତିହାସିକ ତଥ୍ୟ ପ୍ରକାଶିତ ହେବାର ସୁବିଧା ଥିବାରୁ ଏହାକୁ ଐତିହାସିକ କାବ୍ୟ ଆଖ୍ୟା ଦିଆଯାଇପାରେ ।

ପିତା ଓ ପିତାମହଙ୍କ ସମସାମୟିକ ଘଟନାବଳୀ ଅତି ରଞ୍ଜିତ ନ ହୋଇ ଗୌରବବୃଦ୍ଧି ହେବା ସ୍ୱାଭାବିକ । ଦୂରଦର୍ଶୀ ବଂଶଧର କବି ସେହିପରି ଅନତିରଞ୍ଜିତ ଘଟନାବଳୀ ସ୍ୱୀୟ ପୂର୍ବର ମାନସ-ପଟରେ ଚିତ୍ରିତ କରିଥିବାରୁ ଆଜି ସେ ସବୁ ତତ୍ ସହ କବିଙ୍କ ସମସାମୟିକ ଘଟନାବଳୀର ଚିର କୀର୍ତ୍ତିଗାଥା ରୂପେ ସାଧାରଣରେ ପ୍ରଦର୍ଶିତ ହୋଇଅଛି ।

ତରୁଣ କବିଙ୍କର ଏ ନବକାବ୍ୟ କବି-ପ୍ରତିଭାର ପରିଚାୟକ । ନବମ ପଦର ଦ୍ୱିତୀୟ ପାଦରୁ ଚତୁର୍ଦ୍ଦଶ ଛାନ୍ଦଟି କୀଟଦଷ୍ଟ ହୋଇ ନଷ୍ଟ ହେବାରୁ ତଦୀୟ ଜ୍ୟେଷ୍ଠ ଭ୍ରାତୁଷ୍ପୌତ୍ର ମୋକ୍ତାର ଶ୍ରୀ ନିତ୍ୟାନନ୍ଦ କବି ସାଧ୍ୟାନୁସାରେ ତାହା ସମ୍ପୂର୍ଣ୍ଣ କରି କେତେ ଦୂର କୃତକାର୍ଯ୍ୟ ହୋଇଅଛନ୍ତି ତାହା ପାଠକ-ବୃନ୍ଦଙ୍କର ବିବେଚନାଧୀନ ।

ନାନା ବାଧାବିଘ୍ନ ଅତିକ୍ରମ କରି ବହୁଦିନ ପରେ ଆଜି ଏହା ପ୍ରକାଶିତ ହେବାର ସୁଯୋଗ ପାଇଅଛି ; ମାତ୍ର ସାଧାରଣରେ ଆଦୃତ ହେଲେ ପରିଶ୍ରମ ସାର୍ଥକ ହେବ ।

ଏହା ପ୍ରକାଶ କରିବାରେ ଯେଉଁମାନେ ଆର୍ଥିକ, ମାନସିକ ଓ ଶାରୀରିକ ସାହାଯ୍ୟ କରି ଅଛନ୍ତି ସେମାନଙ୍କଠାରେ ପ୍ରକାଶକ କୃତଜ୍ଞ ।

କବିକୁଟୀର
ଜ୍ୟେଷ୍ଠ ମୂ° ୧୩୩୨ ସାଲ

ବିନୀତ
ଶ୍ରୀ ପଦ୍ମନାଭ କବି ।

# କବି ମହେଶ୍ୱର କବିଚନ୍ଦ୍ର ଚରିତ



ତିନି ଶତାବ୍ଦି ପୂର୍ବେ ପ୍ରାଚୀତୀରର ବଳଙ୍ଗା ଗ୍ରାମର ମୁଦ୍‌ଗଲ ଗୋତ୍ରୀୟ ବେଦାଭ୍ୟାସୀ ବ୍ରାହ୍ମଣ ଗୋପୀନାଥ ଶତପଥିଙ୍କ ପୌତ୍ର ମୁକୁନ୍ଦ ଶତପଥି ଜଗନ୍ନାଥଙ୍କ କୃପାରୁ କାବ୍ୟ-ପ୍ରତିଭାରେ ଓଡ଼ିଶାରାଜା ଗଜପତିଙ୍କ ମୁଗ୍ଧକରି କବି ଉପାଧି ଲାଭକଲେ । ସେହି ଦିନରୁ ତାଙ୍କ ବଂଶଧରମାନେ କବି ଶତପଥି ବୋଲି ପରିଚିତ । କେହି କେହି ଉତ୍ତରାଧିକାର ସୂତ୍ରରେ ଜଗନ୍ନାଥଙ୍କ ପ୍ରଦତ୍ତ ଶକ୍ତିର ଅଧିକାରୀ ହେଉଥିବାରୁ ଆଜି ପର୍ଯ୍ୟନ୍ତ ବଂଶଗୌରବ ଅକ୍ଷୁଣ୍ଣ ରହିଅଛି ।

ସ୍ୱାଭିମାନଧନ୍ୟ ମୁକୁନ୍ଦ କବି ଶତପଥି ରାଜ ଉପାଧି-ମଣ୍ଡିତ ହୋଇ ବୈଦ୍ୟନାଥପୁର ଶାସନକୁ ଉଠି ଆସିଲେ, ମାତ୍ର ଅଳ୍ପ କାଳ ପରେ ମହାରାଜାଙ୍କ ସହ ମନୋମାଳିନ୍ୟ ଘଟିବାରୁ ସ୍ୱାଧୀନଚେତା କବି ଢେଙ୍କାନାଳରେ ରାଜ-ସମ୍ମାନ ପାଇ ଅବସ୍ଥାନ କଲେ । ବର୍ତ୍ତମାନ ଢେଙ୍କାନାଳ ରାଜ୍ୟରେ ଅବସ୍ଥିତ କବି ଶତପଥିମାନେ ତାଙ୍କର ବଂଶଧର ।

ଶତପଥି ବଂଶର ଆଦି କବିଙ୍କ ପୌତ୍ର ବୈଦ୍ୟନାଥ କବି ଶତପଥିଙ୍କ ପ୍ରତିଭାରେ ବଂଶ-ଗୌରବ ଉଜ୍ଜ୍ୱଳତର ହୋଇ ଉଠିଲା । ଗୃହବିଚ୍ଛେଦର ସୂଚନା ଦେଖି ପରିଣାମଦର୍ଶୀ କବି ଗୁଣଗ୍ରାହୀ ବୀରଶ୍ରେଷ୍ଠ ବିକ୍ରମସିଂହଦେବଙ୍କ ରାଜଧାନୀ-ଷୋଡଶ କଳାକୁ ଆସି ସାଦରେ ଗୃହୀତ ହେଲେ । ସେ ସେ କେବଳ କଳ୍ପନା-ରାଜ୍ୟବିହାରୀ ଭାବୁକ ଥିଲେ ତାହା ନୁହେଁ; ମସୀସହ ଅସିଚାଳନାଶକ୍ତି ସେ ବାହୁରେ ଯଥେଷ୍ଟ ଥିଲା । ସେହି ସୁଧୀଙ୍କ ଦ୍ୱିତୀୟ ପୁତ୍ର ଦୟାନିଧି କବିଙ୍କ ପ୍ରତିଭା କୁଳଗୌରବକୁ ପ୍ରୋଜ୍ଜ୍ୱଳତମ କଲା । ତାଙ୍କର ଓଜସ୍ୱିନୀ ଭାଷା ଦୁର୍ବଳ ହୃଦୟରେ ମଧ୍ୟ ତପ୍ତ-ଶୋଣିତ-ପ୍ରବାହ ଆଣିଥିଲା;

ଖାଉପାଜରେ ସଜ୍ଜିତ ସେହି ଭାବୁକ କବିଙ୍କୁ 'ବର୍ଚ୍ଛିବାହାଦୂର' ଘୋଡା ଉପରେ ଦେଖିଲେ ଶତ୍ରୁର ହୃଦୟ-ରକ୍ତ ଶୀତଳ ହୋଇଯାଉଥିଲା । ଯୁଦ୍ଧବିଦ୍ୟାରେ ପାରଦର୍ଶୀ ଜାଣି ମହାବୀର ଅଭିରାମସିଂହ ଦେବ ତାଙ୍କୁ ନିଜ ସାମରିକ ବିଭାଗରେ ପ୍ରଧାନ ଅଶ୍ୱାରୋହୀ ଶ୍ରେଣୀରେ ଗ୍ରହଣ କରିଥିଲେ । ଅତି ପ୍ରାଚୀନ କାଳରୁ ଷଡଙ୍ଗୀଙ୍କ ବଂଶଧରମାନେ କବି ବୋଲି ପରିଚିତ, ଏବଂ ସଙ୍ଗୀତ ଓ କାବ୍ୟକଳାସହ ଧନୁର୍ବେଦ, ଆୟୁର୍ବେଦ, ଜ୍ୟୋତିଷ, ନୃତ୍ୟ, ଚିତ୍ର, ଓ ଶିଳ୍ପ ଅନୁଶୀଳନର ସୁବିଧାରୁ ଷୋଡଶ କଳା ସେ ବଂଶକୁ ତ୍ୟାଗ କରିନାହିଁ ।

ଶ୍ରୀ ଦସ୍ତାନିଧି ଷଡଙ୍ଗୀଙ୍କ କନିଷ୍ଠପୁତ୍ର କବି ମହେଶ୍ୱର ଜନ୍ମ ୧୨୭୦ ସାଲରେ ଇଂ ୧୮୬୩ ଅବ୍ଦରେ ଜନ୍ମଗ୍ରହଣ କଲେ । ପ୍ରାଚୀନ ରୀତି ଅନୁସାରେ ମାତୃଭାଷାର ପ୍ରାଥମିକ ଶିକ୍ଷା ଶେଷ କରି ସେ ସଂସ୍କୃତଭାଷା ଅଧ୍ୟୟନରେ ପରିଶ୍ରମ କଲେ । ବାଲ୍ୟାବଧି ସେ କାବ୍ୟାନୁରାଗୀ । କିଶୋରବୟସରେ ତାଙ୍କର ନାନାବିଧ ଚୌପଦୀ-ରଚନା-ଶକ୍ତି ଜନ୍ମିଥିଲା । ପ୍ରାୟ ୧୯।୨୦ ବର୍ଷ ବୟସରେ ସେ ୨୬ ମାଇଲ ଦୂରବର୍ତ୍ତୀ କେଉଁରି ପ୍ରସିଦ୍ଧ ପୀଠ ବଳବାଦେବୀ ଦେବୀଙ୍କ ନିକଟରେ ଅଧ୍ୟାପତି ଜିଭଜିହ୍ୱାର ଅଗ୍ରଭାଗ ଛେଦନ କରି ଦେବୀଙ୍କୁ ଅର୍ପଣ କରିଥିଲେ । ସେ ସମୟରେ ଏ ପ୍ରଦେଶରେ କୌଣସି ଜିହ୍ୱାବାନ୍ ବ୍ୟକ୍ତି ତାଙ୍କ ବଳି ଗାୟକ ନ ଥିଲେ । ସାଧନା ଦ୍ୱାରା ସେ କୋକିଳର ସୁମଧୁର ପଞ୍ଚମସ୍ୱରକୁ ଅଧିକୃତ କରିଥିଲେ ।

ମୃତ୍ୟୁଞ୍ଜୟଙ୍କର ପୂଜା, ଅନନ୍ତଲହରୀ ଓ କାଳୀକର୍ପୂର-ପାଠ ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟ ହେଲେ ମଧ୍ୟ ସେ ବିଶେଷ ଦେବୀଭକ୍ତ ଥିଲେ ।

ସେ ଷଣ୍ମଜନ୍ମା ପୁରୁଷର ପ୍ରତିଭାରେ ବିଶେଷ ଗୌରବାନ୍ୱିତ । ଦ୍ୱାବିଂଶବର୍ଷୀୟ ଯୁବକ ଷୋଡଶକଳା ରାଜବଂଶର କୀର୍ତ୍ତି-କୁସୁମ-ଗୁଚ୍ଛ ଗ୍ରଥିତ କରି ବନଦରଙ୍ଗିଣୀ ପରି କୀର୍ତ୍ତିହାର ନାମକ କାବ୍ୟ ରଚନା କଲେ । ସେ ଏ ଘୋର ଚେଷ୍ଟା ତାଙ୍କ ରାଜଦର୍ଶୀ ରୋଗର ମୁଖ୍ୟ କାରଣ । ମୃତ୍ୟୁଦ୍ୱାରରୁ

ବେଫର ସୁଦ୍ଧା ସେ ସାମୟିକ ଆକ୍ରମଣରୁ ରକ୍ଷା ପାଇଲେ ନାହିଁ । ତାତ୍କାଳୀନ ଷୋଡଶକଳାଧୀଶ୍ୱର ଗୁଣଗ୍ରାହୀ ରକ୍ଷଧର ସିଂହଦେବ ମହାରାଜ ବାହାଦୁର ସ୍ୱହସ୍ତ-ଯଶ-କୁସୁମ-ମାଳା ପରିଧେଇ କବିଙ୍କୁ ବିଶେଷ ସମ୍ମାନିତ କଲେ ।

ରାଜଧାନୀ ଭ୍ରମଣ ସଙ୍ଗେ, ପ୍ରାକୃତିକ ଦୃଶ୍ୟ ଦର୍ଶନେଚ୍ଛା କବିଙ୍କର ଭାବୁକ ହୃଦୟକୁ ଆକର୍ଷଣ କଲା । ସେ ନିଜ ମଧ୍ୟମ ସହୋଦର ଓ ଶ୍ୱଶୁରଙ୍କୁ ଢୌଡ଼ି ସହ କେତେଦିନ ରାଜଧାନୀରେ ନିଜଗୁଣରେ ପ୍ରଶଂସିତ ହୋଇ ସମ୍ବଲ-ପୁର ଗଡରେ ପହଞ୍ଚିଲେ । ସମଧୁର ପଞ୍ଚମସ୍ୱର-ସହ ଲିପିଗୃନ୍ଥରେ ସମସ୍ତଙ୍କୁ ମୁଗ୍ଧ କରି ସେଠାରୁ କବିଚନ୍ଦ୍ର ଉପାଧିରେ ଭୂଷିତ ହୋଇ ଆସିବା ମାତ୍ର ଷୋଡଶକଳାଧୀଶ୍ୱର ଅତ୍ୟାନନ୍ଦହୃଦୟରେ ତାହା ଅନୁମୋଦନ କଲେ ।

ତଥାପି ଅଖଣ୍ଡନୀୟ । ଦୈବ ପୂର୍ଣ୍ଣସୁଖ ଦେବାକୁ ନାରାଜ । ତେଣୁ ପଗ୍ର ପୂର୍ଣ୍ଣ ଯୌବନରେ କବିଚନ୍ଦ୍ରଙ୍କ ଏକମାତ୍ର ପୁତ୍ର ସୀତାନାଥ ମାତାପିତାଙ୍କୁ ଶୋକସମୁଦ୍ରରେ ଭସାଇ ଅନନ୍ତ ସୁଖର ରାଜ୍ୟକୁ ଚାଲିଗଲେ । ପ୍ରଗାଢ ବାତ୍ସଲ୍ୟ ବଶତଃ ତପସ୍ୱୀ ଜନନୀ ସୁନାମଣି ଦେବୀ କେତେକ ମାସ ପରେ ପୁତ୍ର ସହ ମିଳିତ ହେଲେ । ପତ୍ନୀର ସତ୍କାର କରିବାକୁ ଯାଇ କବିଚନ୍ଦ୍ର ଶ୍ମଶାନରେ ବସି କ୍ରନ୍ଦନ-ସ୍ୱରରେ ଅନନ୍ତ ଅତୀତ ଭାବୋଚ୍ଛ୍ୱାସ ବ୍ୟକ୍ତ କଲେ, "କାନ୍ତା-ବିଚ୍ଛେଦାନ୍ତକା " ଚୌତିଶାରେ ।

ପତ୍ନୀବିୟୋଗ ପରେ ଦ୍ୱିତୀୟଦାର-ପରିଗ୍ରହ ସକାଶେ ଅନୁରୁଦ୍ଧ ହୋଇ 'ଭ୍ରାତୃପୁତ୍ରେଣ ପୁତ୍ରିଣ' ଏହି ବିଶ୍ୱାସ ବଳରେ କବିଚନ୍ଦ୍ର ଆତ୍ମୀୟ ସ୍ୱଜନର ସମସ୍ତ ଯୁକ୍ତିତର୍କ ନିରାଶ କଲେ ।

ରାଜ ମହିଷୀ ସ୍ୱର୍ଗାରୋହଣ କରିବାର କେତେକ ମାସ ପରେ ମାଧବ ରଜନୀରେ କୋକିଳ କୂଜନ ସହ ନିଜ ସ୍ୱର ମିଳାଇ କବିଚନ୍ଦ୍ର ଆବେଗ ହୃଦୟରେ ଉକ୍ତ ଅଭ୍ୟସ୍ତ ଚୌତିଶା ଗାଉଥିବା ସମୟରେ ସମବ୍ୟଥୀ ମହାରାଜ ଦିନେ ତାଙ୍କୁ ଡକାଇ ଏକ ମୁଷ୍ଟିପୂର୍ଣ୍ଣ ଅର୍ଥ ଦେଇ କହିଲେ, "କବିଚନ୍ଦ୍ରେ, ଏ ଗୀତ ଆଉ ଗାଇବ ନାହିଁ । ଅନ୍ୟ କେହି ଗାଇଲେ ଗାଉ । ତୁମ୍ଭ

ମୁହଁରୁ ଶୁଣିଲେ ଅମୃତ ଶୋକ କରନ୍ତେ ।" 'ମଣିମାଙ୍କ ଆଜ୍ଞା ଶିରୋଧାର୍ଯ୍ୟ' କହି ରାଜଭକ୍ତ କବି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ହୃଦୟର ବେଦନା ହୃଦୟରେ ବିଲୀନ କଲେ ।

ସହସା ରାଗ ବଦଳ କରି ଗୀତ ଗାଇବା ଓ ରଚନା କରିବାରେ କେବଳ ସେ ପଟୁ ଥିଲେ ତାହା ନୁହେ, ସଙ୍ଗୀତର ମଧୁର ଝଙ୍କାର ସହ ବାଦ୍ୟ ଯନ୍ତ୍ର ଚାଳନାରେ ମଧ୍ୟ ତାଙ୍କର ହସ୍ତ ବିଶେଷ ଦକ୍ଷ ଥିଲା । ଓଡ଼ିଆ ଭାଷାରେ କ୍ରମେ ରାମଲୀଳା ଓ କୃଷ୍ଣଲୀଳା ଅଭିନୟ କରାଇ ସେ ପ୍ରଶଂସିତ ହୋଇଥିଲେ; କିନ୍ତୁ ଜଣେ ଉତ୍ତମ ଗାୟକ ତାଙ୍କର ଭ୍ରାତୁଷ୍ପୁତ୍ର ରଘୁମଣି କବିଙ୍କ ମୃତ୍ୟୁରେ ସେ ତାହା ପରିତ୍ୟାଗ କଲେ । ଭାବବାକ୍ୟରେ ବିବରଣକାରୀ କବିର ହୃଦୟରେ ଚିରସ୍ଥାୟୀ ଶୋକର ସ୍ଥାନ କାହିଁ ? କେତେକ ବର୍ଷ ପରେ ବନ୍ଧୁମାନଙ୍କ ଉପରୋଧ ଅନୁରୋଧରେ ପୁଣି କୃଷ୍ଣଲୀଳା ଆରମ୍ଭ କଲେ; ମାତ୍ର ଓଡ଼ିଆ ଭାଷାରେ ନୁହେ—ବଙ୍ଗ ଭାଷାରେ । କବିତ୍ୱ, କାବ୍ୟ ବା ସଙ୍ଗୀତକଳା କୌଣସି ଭାଷା ବିଶେଷର ଗଣ୍ଡିରେ ଅବଦ୍ଧ ନୁହେ । ଏହି କୃଷ୍ଣଲୀଳାରେ ମୁଗ୍ଧ ହୋଇ ଖରସୁଆଁର ରଘୁନାଥସିଂହ ଠାକୁର (ବର୍ତ୍ତମାନ ଚିଫଙ୍କ ପିତାମହ) କବିଚନ୍ଦ୍ରଙ୍କୁ ଶାଲ୍ ସୁନାବଳା ଦେଇ ଥିଲେ ।

ଚାଇଁବସାର ଓକିଲ ୬ ହରିହର ଘୋଷ ରାଜକାର୍ଯ୍ୟ ବଶତଃ ଦିନେ ଷାଲୋଇକଲାକୁ ଆସି ଏଠାରେ ବଙ୍ଗଳା ଗାନ ହେବାର ଶୁଣି କହିଥିଲେ, 'ଓଡ଼ିଆ ମୁହଁରେ ବଙ୍ଗଳା ଗାନ ଶୁଣିବ !'; କିନ୍ତୁ ଗାନ ଶୁଣି ସନ୍ତୁଷ୍ଟ ହୋଇ ଚାଇଁବସାର ଅନ୍ୟାନ୍ୟ ଓକିଲ ଓ ଅମଲାମାନଙ୍କ ସହ ସଂଯୁକ୍ତ କରି କବିଚନ୍ଦ୍ରଙ୍କ ଦଳକୁ ନିମନ୍ତ୍ରଣ କଲେ । ସେତେବେଳେ ହେସ୍ ସାହେବ ଚାଇଁବସାରେ ଡେପୁଟି କମିଶନର । ନନ୍ଦରାଜାର ପୁତ୍ରୋତ୍ସବ ଉପଲକ୍ଷେ କବିଚନ୍ଦ୍ର ନିଜେ ଭାଟର ଭୂମିକା ଅଭିନୟ କରି, "ସହସ୍ରେ ପିଙ୍ଗଳବାଳଭସ୍ମ, ନନ୍ଦରାଜକୁ ଲେଉଟା ସେବା ଯବ ଶୁନ ପାୟ", ଇତ୍ୟାଦି ଗାଇ

ଗାଇଁ "ମହାରାଣୀକା ଲେଉକା ପୈଦା ଯବ ଶୁନ ପାୟୁ", ଗାଇଲେ । ରୁମାଲବନ୍ଧ ଟଙ୍କା ବର୍ଷଣରେ ଦର୍ଶକସହ ସାହେବମାନଙ୍କ ଆନନ୍ଦ ପ୍ରକାଶିତ ହେଲା । ସ୍ୱର୍ଗର ଦେବତାମାନେ ମଧ୍ୟ ହର୍ଷ ପ୍ରକାଶ କଲେ—'ବାର ବର୍ଷଣରେ ।' ସେହି ଗ୍ରନ୍ଥିରୁ ହେସ୍ ସାହେବ କବିଚନ୍ଦ୍ରଙ୍କୁ "ପିଙ୍ଗଲରାୟ" ବୋଲି ଡାକିବାକୁ ଆରମ୍ଭ କଲେ ।

ପରଦିନ ପ୍ରତ୍ୟୁଷରେ ଶିବାସାହୁ ନାମକ ଜଣେ ଧନୀ ଦ୍ୱାର ଦେଶସ୍ଥ ଗୃହ ସନ୍ନିକଟେ ଗାନକରିବାକୁ ଅନୁରୁଦ୍ଧ ହୋଇ କବିଚନ୍ଦ୍ର ଅସ୍ୱସ୍ଥ ଲକ୍ଷଣ ରକ୍ଷାର୍ଥ ହିନ୍ଦୀଭାଷାରେ କହିଲେ, 'ଧନମଦ' ଧନ୍ୟ ଚୋର ଶକ୍ତି । ଧନମଦ-ମତ୍ତବ୍ୟକ୍ତିର ଅସ୍ୱବସ୍ଥା ଅନିବାର୍ଯ୍ୟ ! ନଚେତ୍ ଜଣେ ଶୁଣି କି ପାହାପରେ ଅଳ ମହେଶ୍ୱର କବିଚନ୍ଦ୍ରଙ୍କୁ ଏ ଅପୂର୍ବ ଅନୁରୋଧ କରେ !' ଶୁଣିବାମାତ୍ର ଭୟ ଓ ଲଜ୍ଜା କର୍ତ୍ତୃକ ଯୁଗପତ୍ ଆକ୍ରାନ୍ତ ହୋଇ ସେ ଧନୀ ନୀରବରେ ଉଠିଗଲା । କବିଚନ୍ଦ୍ରଙ୍କ କ୍ରୋଧ ହିନ୍ଦିଭାଷାରେ ବ୍ୟକ୍ତ ହେଉଥିଲା ।

ଷୋଡ଼ଶକଳାଧୀଶ୍ୱରଙ୍କ ଶାଳକ ମହୋଦୟ ସ୍ୱର୍ଣ୍ଣପୁର ଦୁର୍ଗରୁ ଗୋଟିଏ ରଥବନ୍ଧ ଗୀତ ବସାଇବା ସକାଶେ ପ୍ରେରଣ କଲେ । ତଦର୍ଶନେ ମହାରାଜ ବାହାଦୂର କବିଚନ୍ଦ୍ରଙ୍କୁ ଆହ୍ୱାନ କରି ଉକ୍ତ ବନ୍ଧରେ ଗୀତବସାଇବାକୁ କହିବାରୁ କବିଚନ୍ଦ୍ର ବିନୀତ ଭାବରେ ଜଣାଇଲେ, "ଆଜ୍ଞା, ଆମ୍ଭର ଶିରୋମଣି ତ ଅଛନ୍ତି ।'

( କବିଚନ୍ଦ୍ର ପଦପାଇବାର କେତେକ ବର୍ଷ ପରେ ଷୋଡ଼ଶକଳାଧୀଶ୍ୱର ଦାମୋଦର ଦାଶଙ୍କୁ କବିଶିରୋମଣି ଉପାଧିରେ ଭୂଷିତ କରିଥିଲେ । ) ତଚ୍ଛ୍ରବଣେ ମହାରାଜ କବିଚନ୍ଦ୍ରଙ୍କୁ ଯେଉଁ ଉତ୍ତର ଦେଲେ ତହିଁରେ ସନ୍ତୁଷ୍ଟ ହୋଇ ସେ ଉକ୍ତ ବନ୍ଧରେ ଗୀତ ବସାଇ ତତ୍‌ସହ ଗୋଟିଏ ମହାନାଗ-ବନ୍ଧ ଲେଖି ଗୀତ ବସାଇବା ସକାଶେ ସ୍ୱର୍ଣ୍ଣପୁରକୁ ପ୍ରେରଣାର୍ଥେ ପ୍ରଦାନ କଲେ ।

କଳ୍ପନାରାଜ୍ୟର କବିତାକୁଞ୍ଜବିହାରୀ କବିଚନ୍ଦ୍ର, ଷୋଡ଼ଶକଳା ବିଚାରା-ଳୟରେ ବ୍ୟବହାରାଜୀବ ରୂପେ ନିଯୁକ୍ତ ହେଲେ । ତାଙ୍କର ପ୍ରତିପତ୍ତି ରାଜ୍ୟାନ୍ତରରେ ଘୋଷିତ ହେଲା ; ସହଯୋଗୀର ହୃଦୟ ହିଂସାଜର୍ଜରିତ କଲା । ଭବିତବ୍ୟତା କିନ୍ତୁ ଅଲକ୍ଷରେ ଥାଇ [illegible] ଅଗ୍ରସର ହେବାକୁ ଲାଗିଲା । ମହାରାଜ ବାହାଦୂର ତାଙ୍କୁ ସସ୍ପେଣ୍ଡ ଅର୍ଥାତ୍ ଅନିର୍ଦ୍ଦିଷ୍ଟ ସମୟ ସକାଶେ କର୍ମ୍ମଚ୍ୟୁତ କଲେ । ସେ ସସ୍ପେଣ୍ଡ ଥିବା ସମୟରେ ଉକ୍ତ ହେପସାହେବ ଷାଟୋଇ-କଳାପରିଦର୍ଶନ ସକାଶେ ଆସି ଭ୍ରମଣ କାଳେ କବିଚନ୍ଦ୍ରଙ୍କୁ ଦେଖି ଜିଜ୍ଞାସା କଲେ, "ଅଚ୍ଛା, ପିଙ୍ଗଳରାୟ, ମୋକ୍ତାରି ବେଶ ଚାଲୁଛି ତ ?" 'ନା, ସାହେବ, ମୁଁ ଆଉ ମୋକ୍ତାର ନୁହେଁ ।' କବିଚନ୍ଦ୍ରଙ୍କ ଏହି ଉତ୍ତର ଶୁଣି ସାହେବ ବିସ୍ମୟ ସହକାରେ ନାନା ପ୍ରଶ୍ନ କରି କର୍ମ୍ମଚ୍ୟୁତି ବିଷୟରେ ସମୁଦାୟ ଜ୍ଞାତ ହୋଇ ମହାରାଜଙ୍କୁ ଖଣ୍ଡେ ଅନୁରୋଧ ପତ୍ର ଲେଖିଲେ । ଏହା ଦେଖି ମହାରାଜ ବାହାଦୁର ହୁକୁମ କଲେ, "କବିଚନ୍ଦ୍ରେ, ଆମ୍ଭଙ୍କୁ ନ କହି ଏକାବେଳେ ସାହେବ ପାଖରେ ଅଭିଯୋଗ କଲ ?" ସପ୍ରତିଭ ଭାବରେ କବିଚନ୍ଦ୍ର ଉତ୍ତର ଦେଲେ, "ଆଜ୍ଞା, ମୁଁ ନିମକହାରାମ ନୁହେଁ । ମୋର ପିତାମହ ୰ ଦୟାନିଧି କବି ସ୍ୱର୍ଗୀୟ ଅଭିରାମସିଂହ ଦେବଙ୍କ ସପକ୍ଷରେ ଯୁଦ୍ଧ କରୁଁ ୨ ଦିନେ ବିପକ୍ଷ ଅସିର ବାଇଶ ଚୋଟ ସହି କାତର ହୋଇ ନ ଥିଲେ; ତାଙ୍କର ବଂଶଧର କି କେବେ ନିମକହାରାମ ହୋଇ ପାରେ ! ମୁଁ ଅଭିଯୋଗ କରି ନାହିଁ । ଅକକାଳ ମୋକ୍ତାରି ଉପରେ ଚଳୁଛି ବୋଲି ଜିଜ୍ଞାସାକର କଥା ପ୍ରସ-ଙ୍ଗରେ ସାହେବ ସବୁ ଶୁଣିଲେ ।" ମହାରାଜ ହସି ୨ କହିଲେ, "ନା, ନା, ଆମ୍ଭେ ସେପରି ଭାବରେ କହି ନାହୁଁ । ଆଚ୍ଛା ଆଜିଠାରୁ ତୁମ୍ଭଙ୍କୁ ପୁନଃନିଯୁକ୍ତ କଲୁଁ । ପୂର୍ବପରି ମୋକ୍ତାରି କରି ପାର ।" କବିଚନ୍ଦ୍ର ଜଣାଇଲେ, "ନା ମହାରାଜ, ଆଉ ମୋକ୍ତାରି କରିବି ନାହିଁ; ତେବେ ମୁଁ ଖାରିଜ ନୁହେଁ-ବହାଲ; ଏତିକି ।" ଏହାକହି ଜୀବନର ଶେଷ ପର୍ଯ୍ୟନ୍ତ ଆଉ ମୋକ୍ତାରି କଲେ ନାହିଁ ।

# କବି ମହେଶ୍ୱର କବିଚନ୍ଦ୍ର ଚରିତ ।

ଖାଲୋଇକଲାର ବର୍ତ୍ତମାନ ମହାରାଜ ଓ ଟୁନ୍'ଟଙ୍ ଯୁବରାଜ ଥିବା ସମୟରୁ କାବ୍ୟକଳାରେ ସ୍ୱୀୟ ପ୍ରତିଭା ବିକଶିତ ହୋଇଥିଲା । ଗୁଣଗ୍ରାହୀ ଯୁବରାଜ କବିଚନ୍ଦ୍ରଙ୍କ ଗୁଣରେ ମୁଗ୍ଧ ହୋଇ ତାହାଙ୍କୁ ନିର୍ଦ୍ଦିଷ୍ଟ ସମୟରେ ଉପସ୍ଥିତ ହେବାକୁ ଅନୁମତି ଦେଇ ପ୍ରତ୍ୟହ ଯାହା ପ୍ରଦାନ କରୁଥିଲେ, ତାହା ବର୍ତ୍ତମାନ ନଗଦ ଶହ ଟଙ୍କା କହିଲେ ଅତ୍ୟୁକ୍ତି ହେବ ନାହିଁ । କିଛିଦିନ ଯଥାନିୟମରେ ଉପସ୍ଥିତ ହୋଇ କବିଚନ୍ଦ୍ର ଭାବିଲେ, "ଶୃଙ୍ଖଳାନ୍ତରେ ବନ୍ଦୀ ହେଲି । ମୋର ସ୍ୱେଚ୍ଛା ବିଚରଣ ଶକ୍ତି ବିଲୁପ୍ତ ପ୍ରାୟ । ପ୍ରତ୍ୟହ ନିୟମିତ ଭାବେ ଯୁବରାଜଙ୍କ ସମ୍ମୁଖରେ ଉପସ୍ଥିତ ହେବାକୁ ବାଧ୍ୟ । ମୁଁ ସ୍ୱାଧୀନ କବି—କାହିଁକି ପରାଧୀନ ରହିବି !" ଇତ୍ୟାଦି ଚିନ୍ତାରେ କବିଚନ୍ଦ୍ରଙ୍କ ମନ ବିଚଳିତ ହେବାରୁ ଯୁବରାଜଙ୍କୁ ସବିଶେଷ ଜଣାଇ ତାଙ୍କ ନିକଟକୁ ନିୟମିତରୂପେ ଯିବାର ବନ୍ଦ କଲେ ।

ତାଙ୍କର ଜଣେ ଶିଷ୍ୟ ୬ଉପେନ୍ଦ୍ର ବିଶ୍ୱାଳ ମୟୂରଭଞ୍ଜକୁ ଯାଇ ସଙ୍ଗୀତ ଶିଖାଉଥିଲେ । ସେହି ଶିଷ୍ୟ ଦିନେ ଖାଲୋଇକଲାକୁ ଆସି କଥାପ୍ରସଙ୍ଗରେ କବିଚନ୍ଦ୍ରଙ୍କୁ କହିଲେ, "ଆପଣ ବାରିପଦାକୁ ଯାଇ ସେଠାରେ ରହିବାର ଇଚ୍ଛା ପ୍ରକାଶ କଲେ ଦୁଇଶହ ଖଣ୍ଡ ମୌଜା ପାଇପାରନ୍ତେ ।" ଉତ୍ତରରେ କବିଚନ୍ଦ୍ର କହିଥିଲେ, "ଶୁଣିଛି ସେଠା ରାଜସଭାରେ ସିଂହଭୂମିର ବୃଥା ନିନ୍ଦା ହୁଏ । ମୁଁ ରାଜ-ନିନ୍ଦା ବା ଦେଶ-ନିନ୍ଦା ସହିବ ନାହିଁ, ସେଠାକୁ ଯିବନାହିଁ । ଏଠାରେ ପୈତୃକ ବ୍ରହ୍ମୋତ୍ତର ଜମି ସାମାନ୍ୟ ହେଲେ ସୁଦ୍ଧା ଖାଇବା ପିନ୍ଧିବାରେ ତ କେବେ ମୁଁ ଅଭାବ ଅନୁଭବ କରି ନାହିଁ ।" ସେହି ବିଶ୍ୱାଳ ପାଶରେ କବିଚନ୍ଦ୍ର ରଚିତ ରାମଲୀଳା ଓ କୃଷ୍ଣଲୀଳା ବହିଗୁଡିକ ରହିଲା । କବିଚନ୍ଦ୍ର ରଚିତ ଅନ୍ୟାନ୍ୟ ଚୌପଦୀ ଓ ଚୌତିଶା ମୁଦ୍ରିତ ହେବାର ସୁଯୋଗ ଏ ପର୍ଯ୍ୟନ୍ତ ଆସିନାହିଁ ।

ଇତ୍ୟବସରେ ସାହିତ୍ୟ-ସେବୀ ଜମିଦାର ୰ଗଙ୍ଗାପ୍ରସାଦ ଦେବ ଧଳେ ଆଲୋଇକଳାରୁ ପ୍ରତ୍ୟାବର୍ତ୍ତନ ସମୟରେ ଶୁଣିଲେ ନଦୀସ୍ରୋତର ମଧୁର ସ୍ୱରକୁ ଭେଦ କରି କବିଚନ୍ଦ୍ର କଣ୍ଠନିଃସୃତ ଚିର ପରିଚିତ ସ୍ୱରଲହରୀ ମୃଦୁ ସମୀରଣରେ ଭାସି ଆସୁଛି । ନଦୀ କୂଳରେ ଉପସ୍ଥିତହୋଇ କବିଚନ୍ଦ୍ରଙ୍କ ନିକଟକୁ ଶୀଘ୍ର ଅନୁଚରଙ୍କୁ ପ୍ରେରଣ କଲେ । ସେବକ ଜମିଦାରଙ୍କ ଇଚ୍ଛା ବ୍ୟକ୍ତ କରିବାରେ ସେ ମଧୁର ସ୍ୱରଲହରୀ କ୍ଷଣକାଳ ପାଇଁ ନଦୀସ୍ରୋତରେ ବିଲୀନ ହେଲା । କବିଚନ୍ଦ୍ର କହିଲେ, "ମୁଁ ତାଙ୍କର ଧାର ଧାରେଁ ନାହିଁ । ତାଙ୍କଠାରେ ମୋର କିଛି କାମ ନୁହଁ ନାହିଁ । ମନସୁଖରେ ମାଛ ଧରୁଛି; ଯା କହିବୁ ।" ପୁଣି ସେହି ସ୍ୱରଲହରୀ ବାୟୁମଣ୍ଡଳରେ ଖେଳିବାକୁ ଲାଗିଲା । ଅନୁଚରଠାରୁ ସମସ୍ତ ଶୁଣି ଅମାୟିକ ଜମିଦାର ସ୍ୱୟଂ ତାଙ୍କ ପାଖକୁ ଯାଇ ଇତ୍ୟ ଯିବାପାଇଁ ଅନୁରୋଧ କରିବାରୁ କବିଚନ୍ଦ୍ର କହିଲେ "ଭୀବା ଥିବାଯାଏ ମୁଁ ସେଠାକୁ ଯିବି ନାହିଁ । ଗଲେ ଗୋହତ୍ୟା ହେବ । ତାର କଥା ମୋର ଅସହ୍ୟ ହେବ । ନିଶ୍ଚୟ ତାକୁ ହତ୍ୟା କରିବି । ଆପଣ କ ତାକୁ ଛାଡ଼ ପାରିବେ ଯେ ମୁଁ ଯିବି ?'' ପୁଣି ଜମିଦାର ଅନେକ ପ୍ରକାରରେ ବୁଝାଇବାରେ, ସମୟରେ ଥରେ ଯିବାକୁ ସେ ସ୍ୱୀକୃତ ହେଲେ ଦେଖି, "ବେଶ୍, ତେବେ ନିଶ୍ଚୟ ଯିବ", କହି ଜମିଦାର ଗନ୍ତବ୍ୟ ପଥରେ ଗମନ କଲେ । ଇତିପୂର୍ବେ କବିଚନ୍ଦ୍ର ଇତ୍ୟରେ କିଛି ସମୟ ଅବସ୍ଥାନ କରି ଉକ୍ତ ଜମିଦାର ସହ କାବ୍ୟ ଆଲୋଚନା କରୁଥିଲେ ଏବଂ ନିଜେ ନାନା ପ୍ରକାର ଗୀତ ରଚନା କରି ସମସ୍ତଙ୍କ ମନ ହରଣ କରିଥିଲେ । ଭାବଗ୍ରାହୀ କବି ଉପରେ ବିରକ୍ତିହିଁ ତାଙ୍କର ଇତ୍ୟ ପରିତ୍ୟାଗର ପ୍ରଧାନ କାରଣ ।

ମୋଗ୍ରାର ପରିତ୍ୟାଗ ପରେ କବିଚନ୍ଦ୍ର ଓଡ଼ିଶାର ରାଜଧାନୀମାନ ଭ୍ରମଣକରିବା ଉଦ୍ଦେଶ୍ୟରେ ଦୁଇଥର ବାହାରି ସମ୍ମାନର ସହିତ ପ୍ରଥମଥର ଶାଲ ପାଟମହ ଅନେକ ଟଙ୍କା ପାଇଥିଲେ ମାତ୍ର ଶେଷଥର ଫେରିବା;

ପଥରେ ତାଙ୍କର ସର୍ବସ୍ୱ ଅପହୃତ ହେବାରୁ ଷାଳୋଇବଳାର ୫ ମାଇଲ ଦୂରବର୍ତ୍ତୀ ଉମ୍ବରଡହା ଗ୍ରାମରୁ ଗୋଟିଏ ମେଷ କ୍ରୟ କରି ପାଞ୍ଚ ଶାଳ ବଦଳରେ ଘରକୁ ଆଣିଲେ ।

କାହାର ଖାଇବା ପିଇବାର ଅଭାବ ଦେଖିଲେ ସେ ନିଜ ପିନ୍ଧିବା ଲୁଗା ପର୍ଯ୍ୟନ୍ତ ଦେଇ ତାହା ଦୂର କରିବାକୁ କୁଣ୍ଠିତ ହେଉ ନଥିଲେ ।

ଓଡ଼ିଆ ବଙ୍ଗଳା ଓ ହିନ୍ଦୀଭାଷାରେ ରଚନା ଓ ଗାଇବାର ଶକ୍ତି ଥିବାରୁ କବିଚନ୍ଦ୍ର ଷାଳୋଇଳଲା ତଥା ଅନ୍ୟଗ୍ରାମ୍ୟର ଲୋକଙ୍କର ମନ ହରଣ କରିଥିଲେ । ରୁକ୍ମିଣୀ ବିଭା ନାମକ ଆଉ ଗୋଟିଏ ଛାନ୍ଦ କାବ୍ୟର ରଚନା ଆରମ୍ଭ କରିଥିଲେ, ମାତ୍ର ତାଙ୍କ ଚିରବନ୍ଧୁ ଗ୍ରହଣୀ ରୋଗ କାର୍ଯ୍ୟରେ ବାଧା ଦେଲା । ଏଥର କେବଳ ବାଧାଦେଇ ସେ ସନ୍ତୁଷ୍ଟ ନ ହୋଇ ସନ ୧୨୮୯ ସାଲ ଇଂରେଜୀ ୧୮୮୨ ଅବ୍ଦରେ ଫାଲ୍ଗୁନ କୃଷ୍ଣ ତୃତୀୟା ତିଥିରେ ୪୯ ବର୍ଷ ବୟସରେ ତାଙ୍କୁ ପରଲୋକକୁ ଘେନି ଗଲା । କବିଚନ୍ଦ୍ରଙ୍କ ଇହଲୋକର ଅବଶିଷ୍ଟ କାର୍ଯ୍ୟ ଅସମ୍ପୂର୍ଣ୍ଣ ରହିଲା ।

ଶ୍ରୀପଦ୍ମନାଭ କବି.
କବିକୁଠୀର ।



# କୀର୍ତ୍ତିସାର ।



## ବିକ୍ରମ ସିଂହ ।

### ପ୍ରଥମଖଣ୍ଡ ।

ଦେ-ମଙ୍ଗଳଗୁଚ୍ଛ

ଜୟ ଜୟ ଦୈତ୍ୟ ବଧାରିଣୀ ଶିବବାମା ।
ଜୟ ଜୟ ରଘୁକୁଳ-ସାଗର-ଚନ୍ଦ୍ରମା ହେ । ୧ ।
ସିଂହବାହିନୀ ନିବାର ସଦା ଦୁଷ୍ଟବାରେ ।
ଇଷ୍ଟପ୍ରଦ ସେବକରେ କି ଝଲ ରୂପରେ ହେ । ୨ ।
ପଦ୍ମ-ପଲାଶ-ଲୋଚନା ତ୍ରିଭୁବନ-ମାତା ।
କଞ୍ଜ ବଦନ-ଲପନ ଜଗତ କରତା ହେ । ୩ ।
ପଞ୍ଚଅସ୍ୟ-ବଂଶ * ଇଷ୍ଟ ଦେବୀ ଇଷ୍ଟ ଦେବ ।
ଅଟନ୍ତି ଯେଣୁ ପାର୍ବତୀ ଜନକଜା ଧବ ଯେ । ୪ ।
ସ୍ତୁତି କଲି ତେଣୁ ଅଗ୍ରେ ଦେବୀ ଦେବତାରେ ।
ବିଘ୍ନବିନାଶନ ଅର୍ଥେ ପାର୍ବତୀ ରାମରେ ଯେ । ୫ ।
ତାହାଙ୍କ କୃପାରୁ ଏହା କରିବ ରଚନ ।
ଶ୍ରବଣେ ଲଭିବେ ମନୋହର କର୍ଣ୍ଣ ମନ ଯେ । ୬ ।
ଅହେ ବୁଧ ନରେ କର ଶ୍ରବଣ ଏ ଭାଷ ।
ସିଂହକୁଳ ସୁକୀର୍ତ୍ତିସାର ହୋଏ ପ୍ରକାଶ ଯେ । ୭ ।

* ସିଂହକୁଳ

ମନ୍ତ୍ର କେତେ କେତେ ତହିଁ ଫଣିକାରମାନ
ସୁବେଶ ହୋଇ ଅଷ୍ଟାନେ ହୋଇଛନ୍ତି ପୂର୍ଣ୍ଣ ଯେ । ୨୦ ।
ଷଡ଼ିଷ୍ଟ ରାଜମୁକୁଟ ସିଂହାସନ ପରେ ।
ବଜଶ୍ରେ ବାର ବେଶରେ ଶୁଣ ଧୀର ବରେ ଯେ । ୨୧ ।
ମସ୍ତକରେ ବର୍ଣ୍ଣକଡ ସ୍ୱର୍ଣ୍ଣକର ପାର୍ଶ ।
ବଜ୍ରମଧ୍ୟ ବକଡ଼ର (୧) ଭୂଷିତ ସଂହାର ଯେ । ୨୨ ।
ବକ୍ଷା ବାମ ଭୂଜେ ବୀରବର ବାନା ଛାଜି ।
ଦକ୍ଷ ହରେ ଧୃତ ଗୁଜବୃଦ୍ଧ (୨) ଛରବାରି ଯେ । ୨୩ ।
ସୁଲକ୍ଷଣ ଯମଦାଢ଼ କଟୀରେ ଶୋଭିତ ।
ଅନର୍ଗଳ ତୋଡ଼ର (୩) ପଦରେ ବନ୍ଧିତ ଯେ । ୨୪ ।
ବୀରକୁନ୍ତଳ (୪) ମୁଖରେ ହୋଇଛି ଶୋଭନ ।
ବଧୂରେ କ ମାଳବନ୍ଧୀ ହୋଇଛି ବେଷ୍ଟନ ଯେ । ୨୫ ।
ଏ ବେଶରେ ବୀରପନେ ହଜେ ବଳବନ୍ତ ।
ମଣିମା ମଣିମା ସ୍ୱନ ହୁଅଇ ପୂରିତ ଯେ । ୨୬ ।
ସାନାର୍ତ୍ତ ଶ୍ରବଣେ ସାବଧାନ ଚିତ୍ତ ହୋଇ ।
ଯେ ଯାହା ବାଞ୍ଛିତ ପୁଣ ପ୍ରାପତ କରାଇ ଯେ । ୨୭ ।
ଭଗତକୁ ପୁଚ୍ଛା ହୋଏ ପରଛନ୍ଦ ବାଣୀ ।
ବପ୍ରବେଦଗାନକୁ ଶୁଣନ୍ତି ବୀରମଣି ଯେ । ୨୮ ।
ଏ ସମୟେ ବେତ୍ରକର (୫) କହେ ଯୋଡ଼ କର ।
ସାବଧାନେ ଶୁଣିମା ବୀରାଧିବୀରବର ହେ । ୨୯ ।
ମାଗଧ (୬) ଅଗତ ହୋଇ ରାଜଗୃହ ଦ୍ୱାରେ (୭) ।
ବୋଲେ ମୁଁ ବୁଲି ଅଇଲି ଅନେକ ଦେଶରେ ହେ । ୩୦ ।

୧ ବର୍ମ୍ମ, ୨ ସ୍ୱଜାତ୍ୟରେ ନିର୍ମ୍ମିତ, ୩ ଅଳଙ୍କାର ବିଶେଷ, ୪ କେଶ, ୫ ଦ୍ୱାରୀ, ୬ ଭାଟ, ୭ ସିଂହଦ୍ୱାର ।

ଲାଟ ଭୋଟ ସଉରାଷ୍ଟ୍ର ଦ୍ରାବିଡ଼ କୌଶଳ ।
ଅଙ୍ଗ ବଙ୍ଗ ତୈଲଙ୍ଗ ହିଁ କଳିଙ୍ଗ ଡାହାଳ ଯେ । ୩୧ ।
କେରଳ ଚୋଳ କୁନ୍ତଳ କମ୍ବୋଜ ଗାନ୍ଧାର ।
ମରହଟ୍ଟ ଗୁଜରାଟ କାଶ୍ମିର କାଉଁର ଯେ । ୩୨ ।
ଏ ଆଦି ଦେଶର ନରପତି ଛନ୍ତି ଯେତେ ।
ଯାହିଁ ସମ୍ମାନ ମୁଁ ନ ପାଇଲି କଦାଚିତେ ଯେ । ୩୩ ।
ମାଗିବାର ଧନ ରତ୍ନ ନାହିଁ ମୋର ଚିତ୍ତେ ।
ବୀରତା ଖ୍ୟାତି କରିବ ପତାକା ମାଗୁଛି ଯେ । ୩୪ ।
ବାଜିମେଧ ଯାଗେ ଯଥା ଜଗତ ଯାଜକରେ ।
ବୁଲନ୍ତି ବାଜୀ ଯେ ଲୁଚେ ଯୁଦ୍ଧ ତା ସଙ୍ଗରେ ଯେ । ୩୫ ।
କରନ୍ତି ଜଗତେ ତଥା ପତାକା ବୁଲାଇ ।
ଭ୍ରମିବ ଖଡ଼ଗନ୍ତେ କେହୁ ବାନ୍ଧି ଦେବ ମୁହିଁ ଯେ । ୩୬ ।
ଯୁଦ୍ଧେ ଜଣି ତାକୁ ସେ ପତାକା ଦେବ ମୋତେ ।
ନୋହିଲେ ବନପୃ ଛାଟେ ଦୋହିବ ଯୁଗତେ । ୩୭ ।

ଏହା ଶୁଣି ଭରସା ତେଜନ୍ତି ନୃପ କୁଳ
କରେଦରେ (୧) ରଖିବାକୁ ଯେମନ୍ତ ଅନଳ ଯେ । ୩୮ ।
ଏ ବଚନମାନ କହେ ସିଂହଦ୍ୱାରେ ରହି ।
ବେତହସ୍ତ ଏହା ବୀର ଛାମୁରେ ଜଣାଇ ଯେ । ୩୯ ।
ଶ୍ରବଣେ ଯୋଦ୍ଧାମୁଖୁଁ ଏ ବାଣୀ କଥନ ।
ଯାଅ ବେତ୍ରପାଣି ତ୍ୱରିତରେ ତାକୁ ଆଣ ଯେ । ୪୦ ।
ଆଣି ଭେଟାନ୍ତେ ତାହାଙ୍କୁ ନୃପତି ଛାମୁରେ ।
ସ୍ୱରୂପ ଶୁଣି ମାଗଧ ପ୍ରଶଂସା ବସ୍ତାରେ ଯେ । ୪୧ ।

---

୧ ହାତ ମୁଠା ।

କେତେ ମତେ ସାଗମଣି ପଦ୍ମରତ ହୁରତ ।
ନାସ୍ତପଟେ କଢ଼ ଜଳେ କମଣ୍ଡେ ଅଗତ ଯେ । ୪୨ ।
ବେଦପାଣି ପୂର୍ବେ ମନ୍ତ୍ରୀ ପ୍ରସଙ୍ଗ କଥିତ ।
ସେ ସବୁ କହୁଁ ମାଗଧ ହର୍ଷ ବଳବନ୍ତ ହୁଁଯେ । ୪୩ ।
ଆଜ୍ଞା କଲେ ତବ ବାଞ୍ଛା ପ୍ରସିଦ୍ଧ ହୁରତ ।
କରିବା ଶୁଣ ମାଗଧ ହୋଇଲା ଉଷତ ଯେ । ୪୪ ।
ଭୋଜନ କାଗର ତାହେ ବସ୍ତୁ ମ ନ୍ୟ କହ ।
ପତାକା ତେଜ କୁଞ୍ଚ ବସ୍ତ୍ର ବସ୍ତ୍ର ଯେ । ୪୫ ।
ବୈରିଦଳନ ସାଜ ଶୀତ କମ କେଶରୀ ।
ତଥି ମଧ୍ୟେ ଏ ଦୋମ ଲକ୍ଷିତ ବସ୍ତ୍ରର ଯେ । ୪୬ ।
ପୁନଃ ଲକ୍ଷିତ ଏ । ମ ଅଧବ ଲ୍ମଷ୍ମନ ।
ହସ୍ତେ ବାସ ଦେବ ଖ ନ ଶମନ ଭୁବନ ଯେ । ୪୭ ।
ବାଜବେଳ ବଳଯ୍ୟାଦ ମାଗଧରେ ।
ସାରବେଲୁ ମଦ ଦନ୍ତୁ ଜଳ ଓୋଦରେ ଯେ । ୪୮ ।
ବୋଇଲେ ସଦପେ ନନ୍ଦ ନେବ ବଳକ୍ଷାରେ ।
ବାଦ୍ୟ ଦେଲେ ଏ ଧନ ମ ସଞ୍ଚ କେ ତାରେ ଯେ । ୪୯ ।
କୁଳ ସନ୍ଧିତରେ ତାଙ୍କ ଜାଣିବ ଅବଶ୍ୟ ।
ଶ୍ରବଣେ ଚଳେ ମାଗଧ ଗଲା ହରଷ ଯେ । ୫୦ ।
କେତେ ପୁରେ ଭ୍ରମିଗଲା ମାଳା ଉଡାଇ ।
ସାରବର ନାମେ ପୁରବଜ୍ଞ ମାନ ଜାହୁଁ ଯେ । ୫୧ ।
ନୃପଗଣେ ଚନ୍ଦନା ଲକ୍ଷଣ ବାନାବହି ।
ହୋଇଥାନ୍ତି ଏକା ରଣେ ହୋଏ ଧୈର୍ଯ୍ୟ ଚ୍ୟୁର ଯେ । ୫୨ ।
ପତାକାରେ ବୀରସାର ପ୍ରତାପ ଯେ ବର୍ଣ୍ଣି ।
ଲକ୍ଷିତ ପଚି ଭୂପନ୍ତୁ କେ ହେବ ଭାଜନ ଯେ । ୫୩ ।

ନାଗବର ମୁଖରେ କେ ଭରବ ଅଙ୍ଗୁଳି ।
ବଳାହକ (୧) ଧକାଇ କେ ପାଉବ ମଣ୍ଡଳି ଯେ । ୫୪ ।
ଦେଖି ଦେଖି ଝାସିବ କେ ଧନଞ୍ଜୟ (୨) କୁଣ୍ଡେ ।
ତପ୍ତ ଲୌହ ଦଣ୍ଡ କା ସାମର୍ଥ୍ୟ ହେବ ତୁଣ୍ଡେ ଯେ । ୫୫ ।
ଏମନ୍ତେ ନବ ଭଣ୍ଡରେ ଚଡ଼େ ଯେନ ଦର୍ପ ।
ମୁଖକଣ୍ଠ ଶୁଖାଇ ସେ ବାଳା-ସୁଧାକର ଯେ । ୫୬ ।
କେଶରୀବର ପତାକା କେଶରୀ ପ୍ରମାଣ ।
[illegible] ରକ-ଦମ୍ଭ-କୁମ୍ଭୀ ବହିଲା ଦାରୁଣ ଯେ । ୫୭ ।
କେତେ କେତେ ଦେଶେ ରମରାପେ (୩) ଭ୍ରମିଗଲା ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ରାଜ୍ୟରେ ମିଳିଲା ଯେ । ୫୮ ।
କେତନ ମାଗଧ କରେ ଦେଖି ଗଜପତି ।
ଛଡ଼ାଇଲେ ବଳାତ୍କାରେ ହୋଇ କୋପ ମତି ଯେ । ୫୯ ।
ସେଠାରୁ ସୁତପାଠକ (୪) ଜଣାଣ ଲେଖିଲା ।
ବଡ଼େ ତବ ବାନାବର ଏଠାରେ ରହିଲା ଯେ । ୬୦ ।
ବଳାତ୍କାରେ ନେଲେ ଯେନ ଓଡ଼ିଶା ରାଜନ ।
ପାରିଲେ ଉଦ୍ଧର ମୁଁ ଏ ବହିଲ ଜଣାଣ ଯେ । ୬୧ ।
ପତ୍ର ମୁଦ ଦେଲା ଯାତ୍ରୀମାନଙ୍କର କରେ ।
ଏହା ଦେବ ତୁମ୍ଭେ ବୀରକେଶରୀ ହସ୍ତରେ ଯେ । ୬୨ ।
ଯାଉଣ୍ଡୀ ମୈଥିଳୀପତି ପଦାବ୍ଜ ଚୁମ୍ବନେ ।
ମହେଶ୍ୱର-ଚକ୍ର-ବ୍ରତ ବୁଧଜନେ ଯେ । ୬୩ ।

---

୧ ପର୍ବତ ୨ ଅଗ୍ନି ୩ ମାଗଧର ନାମ ରାମରାପ ୪ ସ୍ତାବକ ।

## ଦ୍ୱିତୀୟ ଛନ୍ଦ ।

ରାଗ—ଚକ୍ରା କୌଶିକ ।

ଭୂବନଜନେ ଯେବେ ମାଗଧଜଣାଣ-ଯଶ ଅଣି କେତେ ବନେ ।
ସୁଦର୍ଶନଧର ଦର୍ଶନ ଆଗରେ ଥିଲେ ଯାଇ ସୈନ୍ୟମାନେ ହେ ।
ଯେବ୍ଧା । ବୀରଭୂଷଣ ଛାମୁରେ ଦେଲେ ଯେ ।
ବୋଲେ ମାଗଧ ଜଣାଣ ଏହା ହେ । ଶୁଣି ସାବଧାନେ କୃଷ୍ଣସାଇଁ ଯେ । ୧
କରୁଁ ପାଠ ପଦ ତତ୍ତ୍ୱେ ଢମ ଜାତ ହୋଇଲା ସେବେ ଏମନ ।
ପାଇ ସୂତଧାର ବେଳୁଁ ବେଳ ବୃଦ୍ଧି ଯଥା ହବନ ଦାଉ ହେ ।
ଇନ । କମ୍ପମାନ ହୋଇ ବଳବାନ ଯେ ।
ହଅଇଲେ କଷାଣ ବହନ ଯେ । ଅଜ ହେଲା ମୋ ଯୁଦ୍ଧେ ତ୍ରାଣ ଯେ । ୨ ।
ସଙ୍ଗେ ଗଜବାଜୀ ପଦାତି ନା ଯିବେ ପଞ୍ଚପୁତ୍ର ଥିବେ ଏକା ।
ବୀରବାନା ମୋର ଛଡ଼ାଇଲୁ ଯେଣୁ ମରଣେ ନକର ଶଙ୍କା ଯେ ।
ଶର । ବାମ ହୋଇଲା ମୁଖ ଚଭୁର ଯେ ।
ଚେକଲାଣି ଅଶ ବସ୍ତ୍ରବାର ଯେ । ନାଶିବ କେ ରକ୍ଷକ ମଣ୍ଡୀର ଯେ । ୩ ।
ପୁଏଙ୍କୁ ଡକାଇ ପାଳ ବେଗେ କହୁ ସାଜ ଆପଣେ ନରେଶ ।
ବାନ୍ଧି ତବଲ୍ (୧) ଲଗାଇ ବକତର ଶିରେ ସୁନ୍ଦର ଉଷ୍ଣୀଷ ଯେ ।
କବା । ସଜ ହୋଇଣ ଉଭା ମସବା ଯେ ।
ପଞ୍ଚକୁମର ଗନ୍ଧର୍ବଶୋଭା ଯେ । ଜାଣନ୍ତ ଅନ ଉପମା ଦେବା ଯେ । ୪ ।
ପାଉଡ଼ୀ ଶୀରମେ ଅର୍ଚ୍ଚନା କରି ବ୍ରାହ୍ମଣୁ ଲଭି ଅଶୀଷ ।
ଯୁଦ୍ଧାନୁକୂଳେ ବାହାର ସଉଜଣ ଅରୋହଣ କରି ଅଶ୍ୱ ଯେ ।
ଶର (୨) ମୁଖେ କହୁ ନୁହଇ ଚାଙ୍କର ସ୍ଥୈ ।
ବୀରକେଶ(୩) ମୋଡନ୍ତି ରୋଷର ସେ । ଦେଖି କମ୍ପିବେ ପରଜାଙ୍କର ଯେ । ୫ ।

---

୧ ବାଦ୍ୟ ବିଶେଷ ଅଶ୍ୱାରୋହୀଯୋଦ୍ଧା ଘୋଡ଼ାପିଠିରେ ବାନ୍ଧୁଥିଲେ, ୨ ପାପ୍ରି, ୩ ନାଶ ।

ଦେଖିଲେ କେତେ ଦିବସରେ ପରଦେଶ ନରେଶ ମିଳଣରିଲେ ।
ବୀର ଅଗତ ବାଣୀ ଶୁଣି ମାଗଧ ଝଷି ନମେ ପଦତଳେ ଯେ ।
ବୀର । ତାଙ୍କୁ ବନ୍ଦୋକ ଭ୍ରଷି ଏଗିଲ ଯେ ।
ବୀରବାନା ଲୁଚିଛ୍ର ସେ-ମୋର । ତାରେ କଦିଯାଇ ବନ୍ଦିବର ହେ ।
ଆବେ ଅସ ଦ୍ଧେବେ ବୀରବାନା କବୈ କର ଦବ୍ରି ମୋର କରେ ।
ଗଲେ ତେଲ ଦେଇ ଶରଣ ମାଗ ଭୁ ବକ୍ରମସିଂହ ପଦରେ ହେ ।
କାଣ ।· ଏହା ନ କର କଲେ ତୁ ଝାଣ ଯେ ।
ନ ରହିବ[illegible] ଏ ବଡ଼ପଣ ହେ । ଦେହହିଁ ନକରେ ଇଳୁଗ୍ରଣ ଯେ ।୭।
ଏ ବାଣୀ ଶୁଣି ବୈତାଳିକ ଗମ୍ଭିର ଗଜପତି ରାଜ ତହିଁ ।
ବୋଲେ ଶୁଣ ଶୁଣ ଓଡ଼ଶାରାଜନ ଯାହା କହୁଅଛି ମୁହିଁ ହେ ।
ଏବେ । ବୀରବର-ଧ୍ୱଜ ଦଅ ନେବେ ହେ ।
ଶ୍ରୁରବାଞ୍ଛିତ ମାନସ ଯେବେ ହେ । ଖଡ଼ ଖଣ୍ଡ ବଣ୍ଡମାନ୍ତୁ ଦେବେ ହେ ।୮।
ବୀରଧ୍ୱଜ ଛଡ଼ାଇବା ମୋଦକରୁଁ ଶୁଣି ମାପକୁଳ ମଣି ।
ପଞ୍ଚପ୍ରବ ଘେନ ସିଂହଦ୍ୱାରେ ତବ ସ୍ଥିତ ବୀର-ବେଶେ ପୁଣି ଯେ ।
ବୀର । ବଳତର ଭୂଷିତ ଶରୀର ଯେ ।
ଯୋଦ୍ଧ ତବଲ ବାଜ୍ଜ ଅବର ଯେ । ବରଛି ଧୃତେ କ ଦୃପୃଙ୍କର ଯେ । ୯ ।
ଏତେ କହି ତେଣେ ବକ୍ରମକେଶରୀ ତବଲେ ପକାଇ ବର ।
ପିଟିଲେ ଦମ ଦମ ଶବ୍ଦ ଉପୁଜ ହୋଇ ସେ କ୍ଷେତ୍ର ଲୋକର ଯେ ।
ଭାଲ । ସର୍ବେ ହୋଇ ତହିଁ ଏକ ମେଳ ଯେ ।
କହି କ ଶବ୍ଦେ କ୍ଷେତ୍ର ଉଛୁଳ ଯେ । ଜଳଧର ଗର୍ଜନରୁ ବଳ ଯେ ।୧୦।
କେ ବୋଲେ ନୁହଇ ଗର୍ଜନ ଘନର ଅଶ୍ୱାରୋହୀ ସଢ଼କଣ ।
ସ୍ଥିତ ରାଜ-ଗଜପୁ-ଦ୍ୱାରେ ତାଙ୍କ ମଧ୍ୟରେ ଯେହୁ ପ୍ରଧାନ ହେ ।
ସେହି । ବାଜିଅଛି ତବଲ ଠାକୁର ଯେ ।
ବଡ଼ ପ୍ରତାପବନ୍ତ ଅଟଇ ସେ । ରଣରେ ସମର ମାଗଇ ଯେ । ୧୧ ।

ବନ୍ଦୀକରୁଁ ଯା ବୀରବାନା ପୂର୍ବରେ ଅମ୍ଭ ରାଜନ ଛଡ଼ାଇ ।
ଉତ୍କଳ ଦେଶେଶ ବିକ୍ରମ କେଶରୀ ବୀରପଣ ଖ୍ୟାତି ପାଇଁ ସେ ।
ସେହୁ । ଧ୍ୱଜ ବନ୍ଦୀକରେ ଥିଲେ ହୋଇ ସେ ।
ଜଗତରେ ବୃଦ୍ଧାଇବା ପାଇଁ ସେ । ଯେ ଲୁଣ୍ଟିବ ଯୁଦ୍ଧ ତାରେ କହୁ ସେ ॥
ବୀରକେତନ ଲୁଣ୍ଠନ ବାର୍ତ୍ତା ଲଭି ଅଇଲେ ସଂଗ୍ରାମ ପାଇଁ ।
ସିଂହଦ୍ୱାରେ ରହୁ ରାଜନ ତହିଁକି ସୁଭଟପାଠକେ ପଠାଇ ସେ ।
ସେନା । ତାଙ୍କ ସ୍ୱରୂପ କରୁଁ ଲୋକନ ସେ ।
ଶିଶୁ ମାନସେ ଦୋଏ ଜନମ ଯେ । ଯୁଝିବାକୁ ହେବ କେ ଭାଜନ ସେ ।୧୩।
ଜନେ ବୋଲିବୋଲି ଏମନ୍ତ ବୃତ୍ତାନ୍ତ ବନ୍ଦୀବାଣୀ ଗଜପତି ।
ଶ୍ରବଣେ ସାତ୍ତ୍ୱିକବୀରଙ୍କୁ ହୃଦୟକମଳେ ଲଭିଣ ପ୍ରୀତି ସେ ।
ବୋଲେ । ତାଙ୍କୁ ସମ ନୋହିବ ସ୍ଥି ବଳେ ସେ ।
ବୀରସାର ସେ ଏ ମହୀ ଥିଲେ ହେ । ଅଜାଣିମାପଣ କଲ ହେଲେ ହେ
ଦୋଷ ନ ଧରିବେ ଷମାବାରିଧି ସେ ବୋଲି ବୀରେଶକେତନ ।
ସୁଚିପାଠକ କରେ ଅଣି ସଭୁରେ ଅପେ କଲେ ସମର୍ପଣ ସେ ।
ପୁନ । ଭଣି କେତେ ସୁବିନୟ ମାନ ସେ ।
ଯଥା ପ୍ରଭୁ ଅଗ୍ରେ ଭୃତ୍ୟ ଜନ ହେ । ମାଗଧେ କରାଇ ହୁଷ୍ଟମନ ସେ ।୧୪।
ବୀରଧ୍ୱଜ ପାଇ ବନ୍ଦୀବର ଯାଇ ପ୍ରବେଶ ବୀର ସନ୍ନିଧି ।
ପତାକାବର ବାନ୍ଧିତାର ଦେବାର ଦରୁଁ (୧) କହେ ସର୍ବବିଧି ହେ ।
ବୀର । ଗଜପତି ଗଜପତି ସ୍ମର ହେ ।
ନ ଡରିଁ କାରେ ମଦଭର ହେ । ତବନାମ ହେଲା ତାରେ ଦର ହେ ।୧୫।
ଯଥା ହରିନନ୍ଦନ ବିଲୋକନ କରୁଁ କୁରୁବଳମାନ ।
କହୁତ କେତେ ପ୍ରତାପଦର୍ଶନରେ ଯୁଦ୍ଧେ ହେଲେ ଅଭାଜନ ସେ ।

---

୧ ଭୟରୁ

ତଥା । ବୀରକେତନ ହେଲେ ଲୁଣ୍ଠନ୍ତା ସେ ।
ତବ ପ୍ରତାପ ହେଲାରୁଁ ଶୋଭା ସେ । ଯୁଦ୍ଧରଚନେ ସ୍ତବ୍ଧ ଜନତା ସେ ।
ଏ ଗିର ଶ୍ରବଣେ ବିକ୍ରମ ପାଶନ୍ତ୍ର(୧) ହୋଇ କି ପ୍ରମୋଦଭର ।
ପତାକା ସହ ବନ୍ଦନ୍ତି ବହୁ ବଦା ସଙ୍ଗରେ ପଞ୍ଚକୁମର ସେ ।
ଯେନା । କର ଦର୍ଶନ ଶୀଳାଦ୍ରିମଣି ସେ ।
ବାହୁଜନ୍ତୁ ଭେଟି କଟକେ ପୁଣି ସେ । ମରହଟି ବଳ ଅକଳଣି ସେ ।୧୮।
ବୀରେଶ ପଣେ ବଙ୍କାଦେଖି ତବଳ ମରହଟି ହେବ ସୈନ୍ୟ ।
ଓଁ... ଫିଟାଥ ଭୂପନ୍ତ୍ରେ ବିକ୍ରମକେଶରୀ କୋପରେ ପୂର୍ଣ୍ଣ ସେ ।
ବୀର । କଲେ ତହିଁ ଏଗିର ଉଚ୍ଚାର ସେ ।
ଜଣ ଜଣକେ ରଣ ପ୍ରବୃର ହେ । କର ଜିଣିମ ଯେ ବାନା ତାର ହେ ।୧୯।
ଏ ବାଣୀ ଶ୍ରବଣେ ମରହଟିବଳ ସମରକୃତେ ଉନ୍ମନା ।
ଦୃଶ୍ୟେ ଶିର ଗୃହ ଇଷ୍ଟଦେବୀ-କୃପାବଶୁଁ ବୀରେନ୍ଦ୍ର ବିମନା ସେ ।
ହେଲେ । ମରହଟିଅ ସୈନ୍ୟ ସକଳେ ଯେ ।
ଯଥା ଶାର୍ଦ୍ଦୂଳ ଅଗ୍ରେ ଛାଗଳେ ହେ । ତଥା ଯୁଦ୍ଧେ କେ ସମ ନୋହିଲେ ସେ ।୨୦
ବିନାଯୁଦ୍ଧରେ ଖ୍ୟାତ ଲଭିଁ ସେ ବଳ ସ୍ୱରୂପ ଲୋଚନ କର ।
କେତେ ଦିନେ ପରବେଶ ବୀରଇଶ ଆସି ଆପଣା ନଗରୀ ସେ ।
ବୀର । ସମ ଅଛୁ ଆଉ କେ ମହୀର ସେ ।
ତାଙ୍କ ସୁକୀର୍ତ୍ତି ଶୀତକର ସେ । ଉଦେ ହୋଇ ବ୍ୟାପିଲା ଲୋକର ହେ ।୨୧।
ସ୍ୱକୁଳ-କୁମୁଦ-ମୁଦ ବସ୍ତୁରତ୍ନ ଅରି-ଦମ୍ଭାବ୍ଜ ମୁଦ୍ରିତ ।
କଲା ବିଶେଷରେ ଅଶେଷ ସୁଖକୁ ଭୃତ୍ୟ-ଚକୋରଙ୍କୁ ଦତ୍ତ ସେ ।
ପୁନଃ । ଗୁଣଗ୍ରାହକ ପଣ କିରଣ ଯେ ।
...ଳମାନସଙ୍କୁ ଦ୍ରବମାନ ସେ । କଳାଶାର ଏ ସର୍ବଦା ପୂର୍ଣ୍ଣ ସେ ।୨୨।

---

୧ ସିଂହ

ବୀରେଶ-କୀର୍ତ୍ତି-ସୁଧାକରେ ସମାନ ବାଞ୍ଛାରୁଁ ବଧୂ ଶଶାଙ୍କେ ।
ବଢାଇ ବଧି କରୁଁ କଳଙ୍କ ସିଦ୍ଧି ଭାବଛେ କ୍ଷୀଣ ପକ୍ଷକେ ସେ ।
ହେଳ । ଧୀରେ ଲଭିବାରୁ ଗୁରୁ ମ୍ଳାନ ସେ ।
ହେଲେ ସୁଧାଯୋଗୁଁ ପୂର୍ଣ୍ଣହେଳ ହେ । କେବେ ନୋହିଲ୍ଲ କଳଙ୍କ ତ୍ୟାଜ ଯେ ॥
କରବାଳବଳେ ଅର୍ଜିତ ରାଜନରାଜୀଙ୍କ ଭାଙ୍ଗି ଗାରିମା ।
ପଞ୍ଚମ ସ୍ଥାନେ (୧) ପଞ୍ଚ ପୁତ୍ର ସ୍ଥାପିଣ ଭୋଗ ତାଙ୍କ ରାଜ୍ୟ ସୀମା ସେ ।
କଲେ । କେତେ ରାଜ୍ୟେ ରାଜା ବନାଇଲେ ଯେ ।
ଅନେକ ଭୂପ ପଦେ ବସାଇଲେ ଯେ । ଯଶ ଏରୂପେ ବିଖ୍ୟାତ କଲେ ସେ ॥୨୪
ଏ ଅନ୍ତେ ନୃସିଂହ ସିଂହେ ରାଜ୍ୟଭାର ସମର୍ପି ରଘୁନନ୍ଦନ ।
ତାମରସ-ପଦ(୨) ଯୁଗେ ଦେଇ ମନ ବୀରୋତ୍ତମ ନେଲେ ଦନ ସେ ।
ଭାବ । ରାମ ଶ୍ୟାମଳ-ମୂରତି ଛବି ଯେ ।
ଦୈତ୍ୟଧର(୩)ନାଶରେ ଯେ ପଟୁ(୪)ହେ । ଧ୍ୟାୟୀ ତାଙ୍କୁ ମହେଶ୍ୱରକଳ୍ପ ଯେ ॥



---

୧ ସାମ୍ବଲେଇକଲା, ଖରସୁଆଁ, ଅଣନତଳଅ, ଦୁଗଣୀ ଓ ବାଁକସହି,
୨ ପଦ୍ମପାଦ ୩ ଅସୁରବୃନ୍ଦ ୪ ଦକ୍ଷ ।

# ନୃସିଂହସିଂହ ଓ ଶତ୍ରୁଘ୍ନ ସିଂହ

ତୃତୀୟ ଛାନ୍ଦ ।

ରାଗ ରାମକେରୀ

ଚିତ୍ର-ଦତ୍ତ କରୁ ଏ ଗୀତେ ଶୁଣ ଧୀର କଳାପ ।
କଦମ୍ବକୁଳ-ସ୍ୱୀକାରନ୍ତ କଉତୁକ ଅମାପ । ୧ ।
ଚିନ୍ତା ଦତ୍ତରେ ମହୀପାଳ ହୋଇଁ ନୃସିଂହ ସିଂହ ।
ପରକୁଞ୍ଜରେ ହନୁଁ ହନ ବୃଦ୍ଧି କରାଇ ଉପୁ ।୨।
ମଦନନନ୍ଦନ ସ୍ୱରୂପେ ମୁଖକୁମୁଦ ବର ।
ଜୀବନଜ (୧)ଦଳସଦୃଶେ ସୁଲୋଚନ ମଧୁର ।୩।
ବିସ୍ତାର ବକ୍ଷସ୍ଥଳ ଅଛି କରକର କି ଶୋହେ ।
ଆଜାନୁଲମ୍ବ ଭୁଜଯୁଗ ଆନ ଉପମା ନୋହେ ।୪।
ଆନ ସମ କି ଶତ ଅବନୀଶ ସୁଗଢ଼ ହର ।
ବାଳକବଢ଼ ମନୋରମ ଯାର ନାମ ନୃହର ।୫।
ସର୍ବଦା ଅମରପୂଜନେ ଚିତ୍ତ ରତ ତାଙ୍କର ।
ଦ୍ୱିଜବୃନ୍ଦେ ମାନ୍ୟକାରକ ଅଟେ ବିବେକବର ।୬।
ଦୟାପର ଦୀନଜନରେ ଦୀନବାନ୍ଧବ ସଖ
ଚଣ୍ଡକର ବଢ଼ ସ୍ୱଜନବତ୍ସଳ ଜଗତେ ପୂର ।୭।
ପାଳନ୍ତି ହନ୍ତୁଁ ଅବନୀ ସେ ପ୍ରଜାମାନସ ଜାଣି ।
ଜୀବନ ବୃଷ୍ଟି କି ରାଜ୍ୟରେ କରେ ଉଦୁରପାଣି (୨) ।୮।
ଗନ୍ଧବହ(୩) ସଦା ହୋଇଲେ ବନ୍ଧୁ କୃଷି ଜନନୀ ।
ପ୍ରଜାଏ ଅତ୍ୟନ୍ତ ନିଶ୍ଚିନ୍ତ ତେଣୁ ରାଜ୍ୟରେ ପୁଣି ।୯।

---

୧ପଦ୍ମ ୨ଇନ୍ଦ୍ରଦସ୍ତ ୩ପୃଥ୍ୱୀ ୪କୁବେର

ଭକ୍ଷ୍ୟ ହୋଇ ଗୋଟିଏକ ନାହିଁ ନଗ୍ରର ଜନ ।
ସଭିବାମହର୍ଷି ପୁତ୍ରକୁଁ(୪) କଣି ଧନାଢ୍ୟ ପଣ ।୧୦।
ପତ୍ରି--ହସ୍ତ-କର-ଅକଳବଳ ଥିବାରୁ ପୂର୍ବ ।
ନୃହର ହର ରାଜାଙ୍କ ଭୟେ ନୋହେ କେ ଅର ।୧୧।
ନରପତି କୁଳେ ଅମୂଲ୍ୟ-ରେଳ ବାକରତନ ।
ବାଘ ନୋହିବେ ଏ ବସ୍ତୁର ତେବଇ ତୋଷନ୍ତି ମନ ।୧୨।
ଅକଣ୍ଟକ କର ଅବନୀ ଭୋଗ ଭୁଞ୍ଜି ନରେଶ ।
ଧୀରବରେ ଶୁଣ ଏ ରସ ଗଡେ କେତେ ବର୍ଷ ।୧୩।
ଦେବ ଦ୍ୱିଜରେ ଭକ୍ତି ନିଷ୍ଠା କେତେ ନୃସିଂହ ସିଂହ ।
ଦ୍ୱିଜ ମାଳାକାର ଭୃତ୍ୟ ଜନ ସୁତ କଳହ ।୧୪।
ହୁଅନ୍ତେ ଦନେ ମାଳସୁତେ ଦ୍ୱିଜ ସୁତ ପ୍ରହାର ।
କରୁଁ ସକଳ କହିଲେ ସେ କାନ୍ଦ ପିତା ଅଗର ।୧୫।
ମାଳାକାର ବୋଲେ ଗୁହାରି ନିବେଦନ କଲେ ହୋଇବ କସ ।
କହିବା ଯାରେ ଦ୍ୱିଜର ସେ ଯେନ ବାସୁଅବୃଷ(୧) ।୧୬।
ଦ୍ୱିଜସୁତରେ ସେ କଦାପି ନୋହିବେ କୋପମନା ।
ସମସ୍ତ ପ୍ରକାରେ ହୋଇବ ତହିଁ ଅମ୍ଭର ଊଣା ।୧୭।
ମାଳାକାର ଭାଷ ଶ୍ରବଣେ ଜନେ ନରେଶ ଆଗେ ।
କହନ୍ତେ ଭୂପାଳ ମାଳକେ ହକରାଇଲେ ରାଗେ ।୧୮।
ପୁଚ୍ଛିଲେ ମାଳକେ ଜାଣୁ ସତ ଦ୍ୱିଜଗଣର ॥
ବାସୁଅବୃଷ ମୁଁ ମାନସେ ବଛ ,ବୀଭ ନଧର ।୧୯।
ଶ୍ରବଣେ ମାଳକ ଉହଇ ଭୂମ୍ୟ ଦ୍ୱିଜେ ଉକତ ।
ସର୍ବଦା ଲଙ୍ଘି ପାରବ କ ଦ୍ୱିଜବର ଭାରତ ।୨୦।

---

୧ ଅଣ୍ଡବଳଦ

ବୋଲିବେ ଯାହା ହେବ ସତ ତହିଁ ମୋର କ ଯଶ ।
ହୋଇବ ଏ ଗିର ଶ୍ରବଣେ ଭୂପ ମାନଙ୍କେ ତୋଷ ।୨୧।
ତ୍ରିଦଶ-ବପ୍ର-ପଦେ ଆଧନ ଏତେ ଭକ୍ତ ରାଜନ ।
ସେ ସୁକୃତ ଫଳେ ଜନନ୍ତ ସୁତ ନାମ ଶତ୍ରୁଘ୍ନ । ୨୨ ।
ବପୁଷ କିଶୋର ଲକ୍ଷଣେ ତାଙ୍କୁ ରାଜ ପଦବୀ ।
ଦତ୍ତକର ନୃସିଂହ ସିଂହ ଦେବ ଚରଣେ ସେବି ।୨୩।
ବୟସ ନେଲେ ଗୁଣବନ୍ତେ ଶୁଣ ଅପୂର୍ବ ବାଣୀ ।
ଶତ୍ରୁଘ୍ନ ସିଂହ କଷ୍ଟକାଳ ରାଜପଦେ ଧରଣୀ । ୨୪।
ପାଳନ୍ତ ପଗ୍ନ (୧) ଦଳତେ ପ୍ରଜା ଅଭୟ କର ।
ପୁତ୍ର ପ୍ରାପ୍ତି ଇଚ୍ଛି ମାନସେ ଦେବ ପୂଜନ କର ।୨୫।
ହେମ ପ୍ରତିମା ବପ୍ରକରେ ପ୍ରତିଦିନ ସେ ଦାନ ।
ବହୁବା ଫଳୁଁ ପରାପତ ହେଲେ ତିନ ନନ୍ଦନ ।୨୬।
କୁମର ଦେଖି ଅତି ତୋଷ ମାନସେ ନୃପମଣି ।
କନିଷ୍ଠ ହେତ ହୋଇଲେ କେଷ୍ଟ କନଷ୍ଟ ବେନି ।
ଦ୍ୱିତୀୟ ପୁତ୍ର ଅଭିରାମ ନାମ ଅତି ସୁନ୍ଦର ।
ଅବ୍ଜ ଯୁଗଳେ(୨) ମୁଖ ନେତ୍ର କରଇ ତ ଧିକ୍କାର ।୨୮।
କାମକମାଣ ପାଶ ନନ୍ଦେ ଭ୍ରୂଲତିକା ସୁକର୍ଣ୍ଣ ।
ନାଶାରେ ଦୂଃଖିତ ସମାନ ବୋଲିବାର ସୁପର୍ଣ୍ଣ ।୨୯
ବାଳାର୍କ ବମ୍ବରେ ବିଡମ୍ବକର ରଙ୍ଗ ଅଧର ।
କୁନ୍ଦନ ଗୁଚ୍ଛକ ମାଳୀକ ସମ ରଦନେ ସ୍ଫୁର ।୩୦ ।
ସୁକଣ୍ଠ ମନୋହର ଅତି ଯୁକ୍ତେ ପ୍ରବାଳ ମାଳୀ ।
ମତ୍ତପାରାବତ ବଚନ ପାଠତୋଟରେ ନ ଝଲି ।୨୧।

---

୧ ଶଙ୍ଖ, ସମୁଦ୍ର; ୨ ଚନ୍ଦ୍ର ଓ ପଦ୍ମ,

ସର୍ବାଙ୍ଗ ମଧ୍ୟରେ ତମସ ହତ ସୂତ (୧)ଅଶନ ।
ସୁଷମା ଦମ ବାନ୍ଧି କାମ ଅଙ୍ଗ ଦହିଲେ ଗୀଳ (୨) ।୩୨।
କୋପାନଳେ ଧୀରେ ବତ୍ସର ଗଢ଼େ ବାତ୍ସଲ୍ୟ ଶୋଭା ।
ବାମାନଯ୍ୟନ କାର ହେଲା ରୂପ ବିପ୍ରସ ଯୁବା ।୩୩।
ଯୁବରାଜକନେ ରାଜପଦ ଦତ୍ତ କଲ ନରେଶ ।
ଅନବରତ ହେଲେ ରତ ସେବାରେ ବୈଦେହୀଶ ।୩୪
କଦମ୍ବକୁଳଚନ୍ଦ୍ର ଅଭିରାମ ରାମ ରଞ୍ଜନ ।
ଆନ ଛନ୍ଦେ ବୁଧେ ଶୁଣିବ ଯାର ତେଜ ବର୍ଣ୍ଣନ ।୩୫
ତ୍ରିଶିର-ଶିର ଛେଦକର ଗନ୍ଧବତୀକାବର ।
ସ୍ମରଣେ ବିରଚନା କୃତ ଏ ଗୀତ ମହେଶ୍ୱର । ୩୬ ।

---

# ଅଭିରାମ ସିଂହ

## ଚତୁର୍ଥ ଛାନ୍ଦ

ରାଗ—କାଳୀ ।

ବିରସୁମତ ଏ ଛନ୍ଦ ଶ୍ରୁତ କର ଶ୍ରବଣ ଶେଷେ ।
କର-ଭ୍ରୀ ରବି ପଞ୍ଚାସ୍ୟ ଅଭିରାମର ଦଶେ ଦଶେ । ୧ ।
ବ୍ୟାପିତ ହୋଇ ଖ୍ୟାତିକ ଦେଇ ପରବଳ ମାରରେ ।
ଚନ୍ଦ୍ରାଭଳାସ ଜଗ ବନାଶ ତମସ ଦୁଷ୍ଟ ବାରେ । ୨ ।
ଦ୍ୱିଜଅଳରି ରଉସକର (୩)ବାନ୍ଧବ ନୀରଜରେ ।
ପ୍ରୀତିବର୍ଦ୍ଧନ ସର୍ବଦା ଯେନ ସେବତ ପାନ ହରେ । ୩ ।
କେଶରୀ ଅଭିରାମ ଯା ନାମ କେ ସର ଅବନୀରେ ।
ନାମ ଶ୍ରୁତିରେ ଶୁଣନ୍ତେ ଖରେ ଖଡ୍ଗ ନ ବହି କରେ । ୪ ।

---

୧ । ପ୍ରଦ୍ୟୁମ୍ନ, ୨ । ଶିବ । ୩ । ଉଲ୍ଲାସ ଦାୟକ

ଯାର ସୈନ୍ୟରେ ପଦଗବାରେ ଅଧିକ ଏଗୁ ଏକ ।
ଗଣନ୍ତି ନାହିଁ ସମରେ ସେହି ସମରେ ଆନ ଲୋକ । ୫ ।
ବକ୍ଷଲେ ଶର ବୈର ଉପର ଧନ୍ୱୀଙ୍କ କୋପର ।
ଥିଲେ ଅମରବର ଦେବର ଚାର ଛୁଉଇ ଶିର ୬ । ।
ନାଗ ବନ୍ଧିତ ବଙ୍କମଙ୍କଢ ଯାର ଯେ ଫଇକାର ।
ବହିବା ଆନ ଉପମା ହିନ ଭୈରବ ଛବ ଯାର । ୭ ।
ଯାର ଲୁହାଠ କଲେ ପ୍ରକଟ ଅର ପଡ଼ନ୍ତି ଧାମେ ।
ମରୁତଙ୍କର୍ଣ୍ଣ ଗଢ ଦ୍ୱିରଢ ଦେହ ଧୀରଉତ୍ତମେ । ୮ ।
ଅଶ୍ୱସୱାର ମାନଙ୍କେ ଯାର ଯାର ଅଷ୍ଟମ ଯେନ ।
ଜଣ ଜଣକ ଗାରମାଃ ଯାକ କକୁ ଣ ପରେ ପୁନଃ । ୯ ।
ଚହ୍ୱାନ ଦ୍ୱରଗ୍ରମ ଭେଶଶ ଅଇର ଉର ସଲ ।
ବାଦରେ ବଧ ଇଛିଲେ ବ୍ରୁଧ ଭେଠାଇ ରବ୍ବାଲ(୧) । ୧୦ ।
କୃଷ୍ଣପକ୍ଷର ଶିର ବଧୂର ପରଗନ୍ଧରେ ଦବ୍ ।
ବଦନ୍ତି ଯାଚକୃନ୍ଦର ଯାର ଯେ କୃଷ୍ଣ ଗନ୍ଧାଇଡ ।୧୧ ।
ନାମ ପ୍ରଭବ ଯା ସଦାଶିବ (୨) ସଢ ସଦାଶିବଙ୍କୁ ।
ଦେବା ପାଶ୍ୱଲେ ବୈରସଙ୍କୁଲେ ରକ୍ଷକ ନାହିଁ ତାଙ୍କୁ । ୧୨ ।
ଶ୍ରୀରାମ ପଞ୍ଚନାସ୍ୱକ ଅଶ୍ୱ ଭଣିଲେ ସରଇ କ ।
ସ୍ୱନାମ ଅବ ବର୍ଣ୍ଣ ବବାଦୀ ଅପୂର୍ବ ଦାନେ ଶକ୍ତି । ୧୩ ।
ଏଥି ମଧ୍ୟରେ ଗଣନା ଯାରେ ସ୍ୱନାମ ଶଙ୍ଗାଧର (୩) ।
ଅଶ୍ୱଆରୋହୀ ବରଷ୍ଟ ଧୂର୍ତ୍ତ ପ୍ରତେ ଗଙ୍ଗା କୁମର । ୧୪ ।
ଯେ ଭଗବାନ ଖମ୍ଭକରଣ ଆରମ୍ଭ କଲେ ରଣ ।
ନାଶନ୍ତି ଯେତେ ଚନ୍ଦ୍ରଗୁପ୍ତରେ କ୍ଷତ ଅନେକ ପୁନଃ । ୧୫ ।

---

୧ ଯମ ୨ ସଦାଶିବ ଗନ୍ଧାଇତ ୩ ଗଙ୍ଗାଧରକନ୍ଦ ।

ବିଧାନ ଜଗଦ୍ଗୁରୁ ଆବର କରେ ଥିଲେ କୃପାଣ ।
ଖାଣ୍ଡପଣରେ ନ ଗଣି କାହେ ଯେମନ୍ତ ଗୁରୁ ଦ୍ରୋଣ । ୧୬ ।
ଯେ ବିଶ୍ୱନାଥ କବର ସୁତ ସ୍ୱନାମ ପ୍ରସିଦ୍ଧ ।
ପ୍ରତିଜ୍ଞାମାନ କୃତେ ବର୍ତ୍ତିନ ଚୂରିତ ଜୋଦ୍ଧେ ବୁଦ୍ଧି । ୧୭ ।
ତାଙ୍କ ଆଗର କଲେ ଉଚ୍ଚାର ଖାର ବୋଲି ମୁଖର ।
କର୍ଣ୍ଣରେ ତାର ନ ରହେ ଶିର ଧୀରେ ବିଶ୍ୱର କର । ୧୮ ।
ବଜ୍ରଦପର୍ଣ ଗମନ୍ତେ ରଣେ ରୂପ ଲୋକନେ ଖାରେ
ମଦ୍ଗାରଶ୍ଚ ଚଉ୍ରେ ଉଦଯ୍ କର ପଲାନ୍ତି ଡରେ ।
ପର୍ଣ୍ଣ ଖ୍ରାମର ନାମ ଶ୍ରୁତିର ଶ୍ରବଣେ ଯଥା ଯକ୍ଷି ।
କୂଳେ କାତର ତଥା ତାଙ୍କର ନାମେ ଲଭନ୍ତି ଭୀତ । ୨୦ ।
ଧାନୁଷ୍କଜନ ପ୍ରଧାନ ମାନ ନାମ ଶ୍ରବଣ କର ।
ରିପୁନାଶନ ବୈରିଗଞ୍ଜନ ରଣ ହ୍ୱାନ୍ଦୋଳଖାର । ୨୧ ।
କେ ଜାନୁଘଣ୍ଟା ପ୍ରଣପୋଲ୍ଲଷ୍ଟ ଭଣରାହୁ ବଜ୍ରାଙ୍ଗ ।
ପ୍ରଚଣ୍ଡଭଲ୍ଲ ଦୁର୍ଦ୍ଦଣ୍ଡବୀର ଭୟପ୍ରଦମାନଭଙ୍ଗ । ୨୨ ।
ପ୍ରଭାବକଣ୍ଠ ଦୁର୍ଜୟଦଣ୍ଡ ବଲମଞ୍ଜନ ପୁନ ।
ବହ୍ନିକଣିକା ସମରରଙ୍କା ଏତେ ବିଶିଷ୍ଟ ଯେନ । ୨୩ ।
ଏଷମ ରେଖେ ଏମାନ ଥିଲେ କେବା ଅଛି ଭାଜନ ।
ଅଗରେ ରହି ଶରକୁ ସହି କରିପାରିବ ରଣ । ୨୪ ।
ବିବେକ ଜନେ ଶୁଣ ସୁମନେ ହନେ ଯକ୍ଷିଷ୍ଟ ମଣି ।
ସକଳ ବଳ ତୋଇଣ ମେଲ ଅସ୍ଥାନେ ବଜେ ପୁଣି । ୨୫ ।
ଅଣାଇଁ ହସ୍ତି ଦ୍ୱିରଦଚଯ଼ କରନ୍ତି ବଲ୍ଲୋକନ ।
ପଦାତିଜନମାନେ ବର୍ତ୍ତିନ ହଅନ୍ତି ପାଚ୍ଛେ ପୁନ । ୨୬ ।
ଯୁବର ତର୍କ ବିଷୟ ଯାକ ସେନାପତିଏ ଭାଷି ।
ଏମନ୍ତ କାଲେ ଅସ୍ଥାନ ତଲେ ଦୂତେକ ମିଳେ ଆସି । ୨୭ ।

କରଯୁଗଳ ଯୋଡଣ ଚେଲ ଗଳେ ଲମ୍ବାଇ ଖରେ ।
ଦଣ୍ଡର ସମ ହୋଇ ଉପମ ନମେ ରାଜପଦରେ । ୨୮ ।
ଉଠି ଏମନ୍ତ ଭାଷଇ ଦୂତ ହେ ପରକୁଳକାଳ ।
ରାଜାଧିରାଜ ଅସମତେଜ ପୃଣ୍ଡି ଯା ମହାସ୍ଥଳ । ୨୯ ।
ସାବଧାନେର ଶୁଣ ମୋ ଗିର ଅରାଢ଼ ଭୂପତେ ।
ହୋଇ ଭୂମ୍ବର ପ୍ରଜାଲୋକର ଲୁଣ୍ଠନ କର ବଳୁ । ୩୦ ।
ଯେ ନାଗପୁଣ ପୁର ଗ୍ରାମେଣ ଅଛନ୍ତି ଠଣା ଦେଇ ।
କି ଅବଧାନେ ତାଂହାଙ୍କ ପୁନ କହଇ ଦୋଷ ନାହିଁ । ୩୧ ।
ହେ ରାମ ଶ୍ୟାମ ମୂରତି କାମଜିତ ରଘୁପତି ।
ମହେଶ୍ୱର ଯେ ମହେଶ୍ୱର ଯେ ଇଷ୍ଟ ତା ପଦ ଚିନ୍ତି । ୩୨ ।

---

## ପଞ୍ଚମ ଛାନ୍ଦ

ରାଗ ପଞ୍ଚମ ବରାଡ଼ି ।

ଶ୍ରବଣେ ଦୂତ ଭାରତୀ କ୍ରିଡେ ଖଟେଶ ଅତି
ଭୀଷଣ ନିଶାଣ ହୁଅ ଜବେ ।
ଯାଜନ୍ତି ସକଳ ପତି — ଗଣ ପୁଣ ସେନାପତି
ବାଜିତସୁ ସାଜ ଅବଲମ୍ବେ ସେ ।
ଖାଉ ଇନ୍ଦ୍ର ।
ବୋଲି ଏହା ଶ୍ରୀକରେ କୃପାଣ । ଝମକାଇ କମ୍ପେ ଘନ ଘନ ଟେ । ୧ ।
ପୁଣି ଭଣିତ ଏ ଗିର ଦର୍ଶନେ ଦଂଶକ୍ରୂର(୧)
ମାନସେ ବଳାଇ ଦ୍ୱେଷ ସ୍ନେହ ।
ଦଂଶୁକେ କରି ଶୃଙ୍ଖଳ ସୁଖେ କରଦେଲ ଗାଣ୍ଡ
ମରଣେ ନ କର ତେଣୁ ଭୟ ସେ ।

---

୧ ସୂର୍ଯ୍ୟ ପୁତ୍ର ଯମ

ନ ଜାଣେ କ ।

ନାମ ଅଭିରାମସିଂହ ମୋର । ବୈର ଭୂରସଲ ବାନା ପାର ସେ ।
ଏମନ୍ତ ପ୍ରତାପ କାଳେ କୃଷାଣ ଆଦ୍ୟେ ପିଟିଲେ
ଚଉ ଚଉ ଶବ୍ଦେ ମଗ୍ନ କର୍ଣ୍ଣ ।
ଶ୍ରବଣେ ସକଳ ସ୍ୱରେ ସଜ ହୁଅନ୍ତି ସତ୍ୱରେ
ଦଶନ୍ତି ଅତି ଭୟଦ ରୂପୀ ସେ ।

ଧନ୍ୟ ସ୍ୱଙ୍ଗ ।

ବାନ୍ଧ ଶିରେ ଉଷ୍ଣୀଷ ସନତ । କବେ ଶୋଭ୍ର ଦଣ୍ଡେ ତୂଣୀର ସେ ।୩।
ବାହୁରେ ବକ-ଶାମଳ - କେୟୂ ବନ୍ଧନ ମଞ୍ଜୁଳ
ଭୂଷିତ ଗଳେ ରୁଦ୍ରାକ୍ଷ ମାଳ ।
ବାନ୍ଧି କଟୀରେ କୃପାଣ ପୁନ ପଗଡ଼ି ବିବର୍ଣ୍ଣ
ପୀତ ସିତ ଅସିତହୁଁ ମେଳ ସେ ।

ଲଲିତରେ ।

ସିନ୍ଦୂର ଛଟା କ ଝିଲ ଦଶେ । ସାଯୁକ ଭମାଣ ହୃତ ଶେଷେ ସେ ।୪
ସଉକାର ଦେଲେ ସକ ଶିରେ ଟୋପର ବଗ୍ରଜ-
ମାନ ଲଗାଇ ଜର୍ଯ ଅମାନ ।
ବାନ୍ଧି ଶାର୍ଦ୍ଦୂଳ ଲାଙ୍ଗୂଳ ମିଶା ସ୍ଫଟିକ ପ୍ରବାଳ—
ମାଳ ଗଳେ ପିନ୍ଧି ବଳେପନ ସେ ।

କଲେ ଅଣି ।

ବସନ୍ତ ମୃତ୍ତିକା (୧) ଅଙ୍ଗ ସାକ । ନେତ୍ର ତଳେ ମୃଗାଙ୍କ ଭଳିକ ସେ ।୫।
କପାଳେ କସ୍ତୂରୀ ଚିତା ଲୋକନେତ୍ରେ ସେ ଭୟଦାତା
କ ସ୍ୱନଦ ବାହୁରେ ବାନ୍ଧୁଣୀ ।
କରେ ଝଣ୍ଡା ଫର ଧର କଟୀରେ ଘଣ୍ଟି ମାଧୁସ୍ୱ
ଝଣ ଶବ୍ଦ ଟାଣେ ସତ୍ତ୍ୱକଟି ସେ ।

---

୧ ବଳଦଅ ମାଟି

ଖଉକୁଳ ।

ଏପର ବେଶରେ ସୁମଙ୍ଗଳା । ହୋଇ ହେଲେ ସିଂହଦ୍ୱାରେ ଠୁଲ ସେ ।୬।
ସ୍ୱବେଶ ହସ୍ତିଦ୍ୱାର-   କାରଙ୍କର ଭାର ତର
ଗିର ଭର୍ଣ୍ଣ ନ ହୋଇ ମୁଖର
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶୈଲ୍ୟ   ଭୂରିଶ୍ରବା ମହାମନ୍ତ୍ର
ଅଶ୍ୱତ୍ଥାମା କବା କୃପଖାର ସେ ।

ପର୍ଣ୍ଣୁରାମ ।

ସହ ଯୁଦ୍ଧାର୍ଥେ କ ହୋଇ ହଜ । ଦେଜେ ଗଞ୍ଜିତ କଶ୍ୟପାତ୍ମଜ ସେ ।୭।
ଅଙ୍ଗ ରଞ୍ଜି କଳେବରେ   ଟୋପର ଲଗାଇ ଶିରେ
ବାମେ ଖାରଧ୍ୱଜ ଶୋଭାକର ।
ଶ୍ରୁତି ଯୁଗଳେ କୁଣ୍ଡଳ   ଗଳେ ନାନା ରତ୍ନମାଳ
ପଦରେ ଢୋଉର କ ରୁଚିର ସେ ।

ଖାରବର ।

ବାନ୍ଧ କଟୀରେ କୃପାଣଧାର । ଚଟକ୍ତ ବଧୂତ ଦସ୍ତକର ସେ ।୮।
ଭୁଞ୍ଜି ତାମ୍ବୁଳ ଲବଙ୍ଗ   ରଦବାସ କଲେ ରଙ୍ଗ ।
ଶ୍ୟାମ ସୁନ୍ଦର ଅଶ୍ୱ ଆରୋହଣ ।
ରାଜ ଗଜଶସ୍ତ ଦ୍ୱାରେ   ସହରେ ସମସ୍ତ ଖାରେ ।
ମିଳ ହୋଇ ମେଳ ଧୀରେ ଶୁଣ ହେ ।

ମହାରାଜ ।

ହୃଅନ୍ତି ଯେମନ୍ତ ଖାର ସଜ । ନାହିଁ ତହିଁ ଉପମା ସମାଜ ହେ ।
ସୁବର୍ଣ୍ଣ ଜର ଜଡ଼ିତ   ସିତ ଟୋପର ଶୋଭିତ ।୯।
ଶିରେ ଛତ୍ର କୁଣ୍ଡଳେ ମଣ୍ଡିତ ।
ରୁଚିର ସିନ୍ଦୂର ଚିତା   କପାଳେ ବାଳ ସବ୍ରତା ।

ସ୍ୱର୍ଭାନୁ (୧) ଭୀତେ କି ପଳାୟିତ ସେ ।
କଳ୍ପିତରେ ।
କର ତାର ତାର ଅବା ଦଶେ । ତାମ୍ବୁଳ ଭୂଷିତ କଣ୍ଠଦେଶେ ସେ ।୧୧
ବାହୁଟି ଭୁଜଙ୍ଗେ ଶୋଭନ    ପଟ୍ଟଚେଳ ପରିଧାନ ।
କରବାଳ(୨) କଟିରେ ବନ୍ଧନ ।
ଦକ୍ଷିଣ କରେ ବରଜ୍ଞ    ଧର ଅରଜନ୍ମ ଅଛି
ପାର୍ବତୀ ଚରଣେ ନମି ଇନ ସେ ।
ଦେଖିଲେ ଦୃଷ୍ଟି ।
ସେକାଳ ଶୋଭାମୟବା ଜଗା । ବ୍ରଦ୍ଧିତ ଅନୋପମା ଦେବା ସେ ।୧୨
ବାହାର ଯୋଦ୍ଧା ରଜନ    କୃତେ ବଇର ଖଣ୍ଡନ ।
ସେ କାଳେ କମ୍ବୁ ନିସ୍ୱନ ପୂର୍ଣ୍ଣ ।
ଦ୍ୱିଜେ ଶ୍ରୁତିଗାନ କୃତ    ପୁରଦରେ ବୀଥି ବୀଥି ।
ସ୍ଥିତ ରମ୍ଭା ତରୁ ଦଧି ମୀନ ସେ ।
ଶାଢ କୂର୍ମ୍ମ(୩) ।
କୂର୍ମ୍ମେ ତହିଁ ଜୀବନ ସମ୍ପୂର୍ଣ୍ଣି । ଗଜେନ୍ଦ୍ର କର ତା ବଲୋକନ ସେ ।' ୨
ଅବକାଶ କରଅର-    ଦ୍ୱାରେ ଦୋଳ ଅଶ୍ୱାରୋହୀ
ସବଳ ସେନ କରୁଁ ଗମନ ।
ଢଡ଼ା ଢଡ ବୀର ଡଙ୍କା    ଶବ୍ଦରେ ଦଥଇ ଶଙ୍କା
ବ ରଙ୍ଗେ ଫଉକେ ଝଣ ଝଣ ସେ ।
ଫରିମାନ ।
ଝାଡନ୍ତି ବୀରକୁନ୍ତାଠ ଦେଇ । ବାଜି ତେଜ ଶାଜଏ ଦେଖାନ୍ତି ସେ ।୧୩ ।
କଲେ ତହିଁ ଏ ଦୃଶ୍ୟର    ପାଛ ବଇର କାତର ।
ଦେବାକୁ ପାଛ ଦାଗ ଦାଗରେ ।

---

୧ ରାହୁଗ୍ରହ, ୨ ତରବାରି, ୩ ସୁନା ।

ନଳଧାରୀ ଶୂର ଶୂର        ଧନ୍ୱୀ ଏକ ଫରକାରୀ ।
ବେନ ବେନ ସୁସାଦ ସଙ୍ଗରେ ସେ ।

ଛନ୍ଦ ଏକ ।

ଏବ ନାଗରା ଶବ୍ଦ ବ ହୁଏ । ପତ୍ତି-ବଲ୍ଲୀ-ଦମ୍ଭ-ହତ କରୁ ସେ ।୧୪
ପାଣ୍ଠନେ ଏହ୍ନ କପଟ        ବଢଣି ବଳେ ଶଙ୍କଠ ।
ଦାନ ଦେଲେ ବେଡ଼ ବରଡଣ ।
ଦଣେ ଦଣେ ଢ଼ଙ୍କା ସ୍ୱନ        ଶୁଣି ପରକୂଳ ଛନ୍ନ ।
ବୂବି ନ ଝୁରେ ଉଡନେ ରଣ ସେ ।

ଅଭଗ୍ରମ ।

ପଞ୍ଚାସ୍ୟ ପୂରବେ ହୋଇ ଦୃଶ । ବୁଡ଼ାଇଲେ ଅଶ୍ୱକେ ସାହସ ସେ ୧୫
ପୁଣି ପରବାର ଦମ୍ଭ-        ଭରେ ସମର ଆରମ୍ଭ
ହରୁ ହୋଇଲା ବଷମ ଗୋଳ ।
ଫରକେ ଫରକେ ବାଧି        ଧନ୍ୱୀକ ଧନ୍ୱୀଏ ବନ୍ଧ
ଶରପୂର୍ଣ୍ଣ କୃତ ଖ-ମଣ୍ଡଳ ସେ ।

ଖଗକୂଳ ।

ଉଡ ନ ପାର ପ୍ରବର ଏକ । ଛୁଡ ଶିର ଫଡ଼ ବେଢେ ଲୋକ ସେ ।୧୬
ସ୍ୱର ନଳଥଳ ରଦ୍ଧ        କଣି ଘନ ଘଡଘଡ
ଗୁଳିଘାତେ ବଚ୍ଛେଦ ହା କର ।
ଛୁଡ଼ଇ କାବ ପଯ୍ୟନ୍ତ        ମସ୍ତକ ଉଡଲା କାର ।
ପଣ୍ଡ ଗଣ୍ଡ ଯାଏ କେ ମହୀର ସେ ।

ବଜ୍ରହତ ।

ମଲ୍ଲଯୁଦ୍ଧେ କଉଁ କଉଁ ବୀରେ । ଶିରେ ଶିର ମାରନ୍ତି କୋପରେ ସେ ।୧୭।

କରବାଳ ଧରି କରେ    ହାଣିଲେ ବାହା ଉପରେ
ପକାଇ ଛତର ଘୋଡ଼ ରଙ୍ଗ ।
ବରଛି ଘାତେ ସଉଦେ    ବିନାଶନ୍ତି କେତେ କେତେ
ନାଶିଲେ ବାଜୀ ଗମନ୍ତେ ମତ ସେ ।
ଏ ସମୟେ
ଅଣଓଟାଇ ଖେଣ୍ଡ୍ରା ବୀର (୧) । କୃଷ୍ଣ ଗଲ୍ୟାଇଦେ ବୋଲେ ଗେର ମେ ॥
ହରି ଯଥା ପାଣ୍ଡବର    ସଖା ହୋଇ କୁରୁବାର
ନାଶି ଧର୍ମସୁତେ ଭୂପକଲ୍ପ ।
ତଥା ଅଭିରାମ ହର    ଅଜ ମୁଁ ବିନାଶ କର ।
ଏ ଅବନୀ କରିବଗିଁ ଦଉ ସେ ।
ଲୋକନାଥ ।
ସିଂହରେ ନକର ଥାଅ ଜାଣି । କାହିଁ ଲୁଚଅଛୁ କେଣ୍ଟା ପୁଣି ସେ ।୧ ୯।
ଏ ବାଣୀ ଶ୍ରବଣେ କୃଷ୍ଣ    ଗଲ୍ୟାଇତ ଭଣି ଶ୍ରୀହ
ନ ହୋଇ ଜାଗ୍ରତ ଥାଉଁ ଜନ ।
ଏ ବଡ଼ ବିଚକ୍ଷ ଗିର    ଦୂପନ ଲୋକନ ତୋଷ
ନକଟ ବ ହୋଇଲା ମରଣ ସେ ।
ଛଳ ଗିର ।
ଶୁଣି ଖେଣ୍ଡ୍ରା ତମେ କମ୍ପିତ । ବୋଲେ ଅଜ ମଲୁ ତୁ ନିଶ୍ଚିତ ରେ ।
ଗଲ୍ୟାଇଭ ନାଶବ୍ଲଦେ    ବାଜୀ ଧୂଷର୍ଣ୍ଣ ଦ୍ୱରଦେ
ବଲୋକ ତା ଶିର-ଚୂଡ଼ା-ମଣି (୨) ।
ଡାକଲେ ଅରେ ପାମର ବଧ    କ ଛଡ଼ଲୁ ଚୋର
ପ୍ରତାପ ଦେଖାଉ    କେତେ ପୁଣି ସେ ।

---

୧ କେନ୍ଦୁଝରର ଜଣେ ଭଲ ଯୋଦ୍ଧା । ୨ ଅଭିରାମସିଂହ ।

ମୋ ଥଗରେ

ବେଣୁଦଳନ-ଛେଦନ ମୋଭା ନାହିଁ କବା ଶୁଣିଲା ଡୋଦର ସେ । ୧୧ ।
ବୋଲି ହୋଇ ତମଭର - ବାଜୀ ଧୂଆଇଁ କବର
କରେ ଧର ଖଡ୍ଗ ଭାଷାରଣ ।
ଖେଣ୍ଡ୍ରା ଉପରେ ନେଇଁ ସମ୍ଭାଳ ସମ୍ଭାଳ କହୁ
ପ୍ରହାରନ୍ତେ ହେଲା ବଚ୍ଛେଦନ ସେ ।

ଅପଘନ (୧) ।

ହେଲା ତାର ମସ୍ତକେ ପତନ । ବଲୋକ ଭାଙ୍ଗିଲେ ପର ସୈନ୍ୟ ସେ । ୧୨ ।
ପଳାନ୍ତେ ସୈନ୍ୟ ସକଳ ଆଜ୍ଞା କଲେ ମସ୍ତପାଳ
ପଛେ ଗୋଡ଼ାଇ ବିନାଶ କର ।
ଶ୍ରବଣେ ସମସ୍ତ ବୀରେ ତରବାଳ ଧର କରେ
ବଚ୍ଛେଦନ କଲେ ପରବାର ସେ ।

ଅବଶେଷ ।

ପାଞ୍ଚ ସାତ ଜନ ସଙ୍ଗ ହୋଇ । ଲୋକନାଥ କେଶରୀ(୨)ପଳାଇ ସେ । ୧୩
ବଲୋକ ତା ଦଶରଥ- ଜଡ ମରୁଡର ବଡ
ଧାମନ୍ତେ ବେଢିଲେ ଜବେ ଯାଇ ।
ହାଣନ୍ତେ ଧର କୃପାଣ ଅଭିରାମସିଂହ-ଆନ
ଦେଇ ପୀତାମ୍ବର ସିଂହ(୩) କହୁ ସେ ।

ଅହେ ବୀର ।

ଗୋହ୍ରବଧ ନ'କର ନ କର । ଜଗତେ ଦୂଷଣ ଏହୁ ଗିର ହେ । ୧୪
ବୃନଧ୍ବୀ ହୋଇ ସେକାଳେ ଲୋକନାଥ ସିଂହ ବୋଲେ
ନାଶିଲେ ନଅନ୍ତ ମୋର କ୍ଷୀର ।

---

୧ ଦେହ ୨ ଖରସୁଆଁ ଫାଡ଼ ୩ ଦୁଜଣାର ସାମନ୍ତ ।

ସୁଯଶ ବଖ୍ୟାତ କର ଶିର ପାଲଟ ମୋହର
ଯେନଯାଅ ଉଷ୍ଣୀଷ କଣ୍ଠାର ହେ ।
ବଗୁର ତ ।
କୋହଲ ବ ନାଶ ଭୂମ୍ବ କରେ । ଶୁଣି ଦଶରଥ ମୋଦବରେ ଯେ ।୨୫।
ଯେନ ଉଷ୍ଣୀଷ କଣ୍ଠାର ମହାରାଜ୍ଞ ପ୍ରବର
ଦେଇ ସକଳ ବୃତ୍ତାନ୍ତମାନ ।
ଭଣନ୍ତେ ପ୍ରମୋଦ ନର- ଈଶ ଉଷ୍ଣୀଷ କଣ୍ଠାର
ବୀର କରେ ଦତ୍ତ ରଚ ପୁନଃ ସେ ।
ଶିରମାଳ ।
ସମ୍ଭବ ଶକଟେ ଭରପୂର୍ଣ୍ଣି । କୃତେ ବାହୁଭାବକେ ରାଜନ ସେ ।୨୬।
ବାଜଇ ବବଧ ଛନ୍ଦେ ବାଦ୍ୟ ନାଚନ୍ତି ଅନନ୍ଦେ ।
ପଦଗ ଶ୍ରେଣୀ ଫରକମାନ ।
ରାଉତେ ବାଜଡେଜକୁ କରାନ୍ତି ଲଢ ମୋଦକୁ
ବୀରଡାକ ଶୁଭେ ଘନ ଘନ ସେ ।
ମହାରାଜ ।
ପରବେଶ ହୋଇଲେ ନଗରେ । ସଜ ଉଲ୍ଲାସି ହୋଇଲେ ଘରେ ସେ ।
ମେଳାଣି ଦେଇ ସବଳେ ଗଡ୍ୟକର୍ମ୍ମ ବଢ଼ାଇଲେ ।
ମଣୋହ ଅନ୍ତେ ଅସ୍ତାନେ ବଜେ ।
ଭୂତ ପାନାର୍ତ୍ତି ଶ୍ରବଣ ଭୂପ କଚ୍ଛଦନେ ଶୁଣ ।
ଧୀରେ ଅନ ସୁକୀର୍ତ୍ତି ସମାଜ ସେ ।
ବୀରମଣି ।
ମୈଥିଳୀ ବରାହଭୂମିନାଥ । ଜ୍ୟେଷ୍ଠ ସୁତ ସଙ୍ଗତେ ବନ୍ଦନ୍ତି ସେ ।୨୮।
ବରାହଭୂମିରାଜନ କନିଷ୍ଠ କ୍ରମରେ ଯେନ
ରାଜ ପଦବୀ ଦେବା ପାଇଁଲେ ।

ଲଭି ଅଭିମାନ କେଷ୍ଟ- ନନ୍ଦନ ବିଷପୂର୍ବମାନ
ଅପି ମିତ୍ର ଛଳରେ ଭାଷିଲେ ସେ ।
ମିଶ୍ର ସାନ ।
ଶୁଣି ଅଭିରାମ ସିଂହ ଭଣି । ମୋ ମିତ୍ରେ ଯେ ଅଭିମାନ-ଦାମି ସେ ।୨୯।
ମିତ୍ର ଛଳେ ଉଗ୍ରପାଳ ଯଥା ବାଳ କରି ହତ
ହଂସଧ୍ୱଜରେ (୧) ବହୁତ ମହାଶ ।
ମୁଁ କରି ତା ମାନ ଦାନ (୨) ସେ ରାଜ୍ୟେ ମିତ୍ର ରାଜନ
ପଦ ଦାନ ରଚିବ ଅବଶ୍ୟ ସେ ।
ରକ୍ଷକ ତା ।
କାହିଁ ନାହିଁ ଏ ମହୀମଣ୍ଡଳେ । ବଧିବ ରଖିଲେ ହରପାଳେ ସେ ।୩୦
ଏସନ ପ୍ରତାପମାନ ଶୁଣି ମୋଦ ମିତ୍ରମନ
ରାଜନ ପେଷିଣ ଦୂତମାନ
ଖରସ୍ୱାଁଅଁ ବାଙ୍କସାହୁ ଅବ ଭ୍ରାତଙ୍କୁ ଡକାଇ
କରି ସର୍ବ ବିଷୟ କଥନ ସେ ।
ମହାରାଜ ।
ହକରାଇ ଛତ୍ରାଭୁଳେ ପୁନ । ଭାଷିଲେ ଖୋଜ ସୁଯାତ୍ରାଦନ ସେ ।୩୧
ଜଣାଇଁ ଜ୍ୟୋତିଷଗଣେ ଯାତ୍ରାକୁ ବଶିଷ୍ଟ ଦନ
କାଲି ମାତ୍ର ଅଷ୍ଟମ ତାରେଶ ।
ତବ ହେ ବୀର ଉତ୍ତମ କୋହଲା କ୍ଷେଣୁ ସେ ବନ୍ଧ
ଦାକ୍ଷି ଗତେ ଚଉଦ ଦବସ ସେ ।
ଅନକୂଳ ।
ବରଜି ବୈରି ବଘାତ କରି । ଶୁଣି ଅତି ମୋଦ ନରବର ସେ ।୩୨

---

୧ ସୁଗ୍ରୀବ ୨ ଛେଦନ

ସେ ଦିନ ରଜନୀ ଅନ୍ତେ ଉଠିଣ ବଡ଼ ପ୍ରଭାତେ
ମନ୍ତ୍ରଇବା କପଟ ରଚନ ।
କର ମୋହନକେଶରୀ (୧) ଏ ମନ୍ତ୍ରରେ ଅଧିକାରୀ
ହେବ ଭାବ ଦିଅଇ ଘୋଷଣ ସେ ।
ଯାଇ କବେ ।
ଅଗ୍ରେ ରଣ ଗଉନ ବ୍ୟାଜରେ । ଘୋଷଣ ଶ୍ରବଣେ ସର୍ବଙ୍ଗରେ ସେ ।
ସାଜ ନୃପ-ସିଂହଦ୍ୱାରେ ଭୂଣ୍ଡ ହୋଇଲେ ସତ୍ୱରେ
ଶ୍ରବଣେ ଅଭିରାମ କେଶରୀ ।
ଭୀଷଣ ଢାରଘୋଷଣ କେ ଦେଲା କେ ଦେଲା ପୁଣ
ଅଶିବ ଦିବସ ନବଗ୍ରହ ସେ ।
ଜଣାଇଁ କେ ।
ଏହା ମୋହନସିଂହ କହଇ । ଅଗ୍ରତରେ ଗଲେ ଯୁଦ୍ଧ ପାଇଁ ସେ
ଶୁଣି କଲେ ଆଜ୍ଞା ପୁନ ସେ ଯେବେ କଲେ ଗମନ
ଯାହା ସେ ମୋ କହୁ ଗଙ୍ଗାଧର ।
ଜତେ ବହୁ ସେନାପତି ଅଷ୍ଟାଦ୍ରୋହ ନରପତି
ସବଳ ସେନ ହେଲେ ବାହାର ସେ ।
ପଥେ ଯାଇ ।
ଶୁଣିଲେ ମୋହନସିଂହ ନାହିଁ । ଭରତ କପଟ ପୁରେ ଯାଇ ସେ
ଜାଣି ଏହା ତମେପୂର୍ଣ୍ଣି ଡାକ ପାଶେ ଭଗବାନ
ପଣ୍ଡାରେ ଏ ବଚନ ରଚନ ।
କଲେ କହ ଯାଇ ଭୂହ ମୋହନ ସିଂହଙ୍କ ତହିଁ
ମୋ ନାହିଁ ଏ କପଟ ସାଧନ ସେ ।
ତହୁ ମନେ ।

---

(୧) ଗଉଣ୍ଡିଆ ପଦ

ଏମନ୍ତ ଭୋଗ ଘଟିତ କର । ମୁଁ ଯେବେ ଅଭିରାମ କେଶରୀ ହେ ।୩୬।
ରଣ ଜୟ କର ଯେବେ ପୁରେ ବାହୁଡିବ ତେବେ
ଅବଶ୍ୟ ବିହିବ ତା ବିନାଶ ।
ଶୁଣି ଦ୍ୱିଜବର ଯାଇ ମୋହନ ସିଂହରେ କହି
ଉତ୍ତର ଶୁଣେ ହରଷ ଭାଷ ଯେ ।

ଶୁଣି ଚତ୍ରେ ।

ମୋହନ କେଶରୀ ନଭ ଗ୍ରନ୍ଥ । ପ୍ରବେଶ ହୋଇଲେ ବୀର କଣ୍ଡ ଯେ ।
ଧଣି ବନ୍ଧୁ ବଚନ ଶେଷିଲେ ବୀରେନ୍ଦ୍ର ମନ
ଗମନ ବିରଚି ତହୁଁ କାବ ।
ବିଲୋକ ଅଟବି ଛବି ଭୂଙ୍ଗକଣ୍ଠ ବଢ ଭାବି
ବିଶେଷ ଉପଜ ଚକ୍ର ଭାବ ଯେ ।

ବାଟେ ପଡ ।

ତଥି ଜଡ ପାଦ୍ୟାଷ୍ଣ ଅଣି (୧) । ଅଚ୍ଛେଦ ସିନା ବିଷମ ଅଣୀ ହେ ।
ଶାଖା ହୀନ ଉଚ୍ଚ ତରୁ ଯୋଗରୁ ସୁଗାଭ (୨) ଗୃରୁ
ସପ୍ତଚର୍ (୩) ଖଞ୍ଜର ମାଧୁରୀ ।
ବନ୍ଧୁର ବେଢେ ନାଗାଲ ଉପୁଙ୍କର ତଥି ମେଳ
ଯୋବାବର ବର୍ଜେ ମୃଗାର ଯେ ।

ପତ୍ରିଚ୍ଛନ୍ଦ ।

କେତେ ବେଳେ ଲୋକ ତହିଁ ଯାଇ । ବୀର କେଶରୀ ତା ଜାଣି ଯାଇ ହେ
ବଲ୍ଲଭ-ଭୂମି ଗଞ୍ଜକୁ (୪) ବେଢିଲେ ଜାଣି ରଣକୁ

---

(୧) ଅଣି—ନଦୀ; ଅଣି—କାନଖିଲ । (୨) ଉଦଳ । (୩) ସୁବର୍ଣ୍ଣରେଖା ଉତ୍ତରରେ ଥିବା ପାଉନାଳ । (୪) ଗଡ ବଦଳରେ ଗଞ୍ଜ ଗ୍ରାମ୍ୟ ଭାଷା ।

ରିପୁ ବଳ ଅଇଲେ ଦ୍ରୁତ ।
ବଳ ଉଭୟର ଭେଟ        ବାଦିତେ ରଣ ପ୍ରକଟ
ହୋଉଁ କେତେ ଅଦ୍ଭୁତ ଜନତ ସେ ।
ହେଲା ଛନ୍ଦଁ ।
ରାମ-ରାଜ ପୁଞ୍ଜତେ ବିରାଜ । ମହୀଶ ବଳାଇ ଯୁଦ୍ଧେ ସ୍ନେହ ସେ । ୪୦
ଯେନା ଦୁର୍ଦ୍ଦିନରେ (୧) ସପ୍ତ —   ବାଜୀ (୨) ଗୁପ୍ତ ଗଣ ଗତ
ବାଜିରାଜ ପ୍ରବଳ ହେବାରେ ।
ଅଜ୍ଞାନ ତମସ କୃତ        ମାନସୁଁ ଭୀତ ମୂର୍ଚ୍ଛିତ
ଅଦ୍ଭୁତ ଦ୍ରବେ ରଜନୀଚରେ ହେ ।
ଘନ ଘନ ।
ହୋଉଁ ନଳୀ କମାଣ ଗର୍ଜନ ।   ହେଲା ରଣ ଅବନୀ କମ୍ପନ ସେ ।
ଅବର୍ଦ୍ଧନ ବେଳୁଁ ବେଳ        ହୋଇଲା ବିଷମ ଖେଳ
କର ଧାରଣ କରେ କୃପାଣ ।
ବୀର ଉଭୟ ବଳର        ମିଶି ବାହାନ୍ତେ ସମର
କେତେ ଦଳେଁ ଲଭନ୍ତି ମରଣ ସେ ।
କାହା ଶିରେ ।
କରନ୍ତେ କେ ମୁଦ୍ଗର ପ୍ରହାର ।   ମରଇ ସେ ଉଦ୍ଗାରି ରୁଧିର ହେ ।
ବାହନ୍ତେ କାହାର କାଣ୍ଡ        ତୁଟଇ ତା ଭୁଜଦଣ୍ଡ
ପର୍ଶୁ ଘାତେ ବିଚ୍ଛେଦ କା ମୁଣ୍ଡ ।
ଦେହୁଁ ଧାରେ ନଳଗୁଳ        ଫୁଟନ୍ତି ମଧ୍ୟରେ ଛଳ
ମାଂସ ଧୂଳି କରନ୍ତି ତା ପିଣ୍ଡ ସେ ।
କୋହ୍ନୁଁ ବୀର ।
କା କୁନ୍ତଳ (୩) ଧରି ବାମ କରେ । ଶିର ଛେଦ ଫିଙ୍ଗନ୍ତି କୋପରେ ସେ

---

(୧) ବର୍ଷାକାଳ (୨) ସପ୍ତବାଜୀ—ସୂର୍ଯ୍ୟ (୩) କେଶ ।

ଫଟକେ ଫଟକେ ଭେଟ  ହୁଅନ୍ତେ ଦୀର୍ଘ କୃପାଣ
ଦେଇ ଝାଳ ଉଦନ୍ତ କେ ତହିଁ ।
ଆଉକ ହାଣଇଁ ଭେଇଁ  ସୁଗନ୍ଧ କର ବଖାଇ
ପୁଣି ସେ ଖଣ୍ଡା ବଘାତ ବହୁ ଟେ ।

ଅପଦନ ।

ବଚ୍ଛେଦନ କଉଇ ତାହାଭ । ଯୀଟେ ଶୁଣ କଣ୍ଠ ଗଙ୍ଗାଧର ହେ ।
ସ୍ୱସୈନ୍ୟ କାତର ହୋଇ  ପଛକୁ ଧାଇବା ଗୃହଁ
ଡାକଲେ ପଲାଅ କା ଭୟରେ ।
ରହ କ୍ଷଣମାତ୍ର ମୋର  ହଲୋକ ହର ସମର
ହାର ତର ବଇଶ ତସ୍ୟର ସେ ।

ନକର ମୁଁ ।

ଅଜ ହୋଇବ ବନାଶକର । ରଘୁକ ହୋଇଲେ ସୁରବର ସେ । ୪୫
ବୋଲି ବରଷ୍ଟି ବୃଦ୍ଧାଇ  ରେ ରେ କାର ଶବ୍ଦ ବହୁ
ତହ୍ରାକୃଷ୍ଣ ବାଙ୍କାକ ଫେଗଇ ।
କର ବରକ୍ଷ ବଘାତ  ବୈରି ବଳ କରୁଁ ହତ
ଦେଖି ବୀରଭଦ୍ର ଆଗ ହୋଇ ସେ ।

ଭମ ପୂର୍ଣ୍ଣ ।

ଚଟେ ଗଙ୍ଗାଧର ଜଟେ ବହୁ । ସୈନ୍ୟ ନାଶୁ ପ୍ରତାପ ଦେଖାଇ ରେ । ୪୬
ପେଶି କଷ୍ଟିତ ମାର୍ଗଣ (୧)  ହୋଟକ ହଦ ତୋ ପ୍ରାଣ
ହରକ ଭାଷି କମାଣ ଗୁଣେ ।
ବାନ୍ଧୁ ଏକ ସ୍ୱର ଯୋଡ  ଶ୍ରବଣ ଯାଏ ଅମ୍ବୁଷି
ସ୍ଥଗନ୍ତେ ଶିଁ ଶବ୍ଦ ଉଚ ଟାଣେ ସେ ।

ବରେଦନ ।

ହେଲା ଗଙ୍ଗାଧର ଜତ ଶ୍ରେଳେ । ମସ୍ତକ ପଞ୍ଚାଲ ଛୁଡ଼ ଭଲେ ସେ । ୪୭ ।

---

(୧) କାଣ୍ଡ ।

ବଳେଲ ସ୍ୱ ସେନାପତି — ହତ ସୈନ୍ୟ ଲଭି ଭୀତ
ପଳାନ୍ତି ଛାଡ଼ି ସମର କ୍ଷିତି ।
ଗୋଡ଼ାଇ ବଙ୍ଗାଳବୀର କରନ୍ତି ଶର ପ୍ରହାର
ଦେଖି ଛତ୍ରିପତି (୧) ପଚାରନ୍ତି ସେ ।
କି କାରଣ ।
ପଳାଅ ଭୟେ ଛାଡ଼ଣ ରଣ । ଜଣାଇଁ ସୈନ୍ୟ ଭୟ ମରଣ ସେ । ୪୮ ।
ଶୁଣି କୁପିତ ନୃପତି ସେନ ସଙ୍ଗେ ସାଧେଶନ୍ତି
ଅଗ୍ରସର ହୋଇଁ ସର୍ବ-ବଳ ।
ଚାଲନ୍ତି ପୁଣ ରଣକୁ ଡମେ ଶତ୍ରୁ ମାରଣକୁ
ସର୍ବେ ଧୃତ କରେ କରବାଳ ସେ ।
ସାବକୁଳ ।
ବଳିଁଧର ପଣି ଶତ୍ରୁବଳେ । କେ ବଶ କେ ଭଂଗ ହନାଣିଲେ । ୪୯
ପରନ୍ତମ୍ଯୁ ଏକ ଏକ ବେଜାହୁଣୁ ଫରିକ
ଧନ୍ୱଗଣ ସାଦ ନଳଧାରୀ ।
ହନାଣୁଁ ଦଶପଞ୍ଚମ ବୀରବରଙ୍କୁ ଅଭିରାମ—
ସିଂହ ଜଦୋ ଶର ଭେଦ କରି ସେ ।
ଘାତ ପାଇ ।
ବୀରକେଶରୀ କୋପରେ ପୂର୍ଣ୍ଣି । ଖଡ୍ଗେ ଶିର କଲେ ତା ଛେଦନ ସେ ॥
ଗଜବାଜୀ ଅଗଣନ ପଡ଼ିଲେ ହୋଇ ଛେଦନ
ବହିଲା ଶୋଣିତ ନଦୀ ତହିଁ ।
ବୀରର-ଗଣ ଶରୀର ଭୂତଳ ତ ସିକ୍ତ ଶୀର
ଫେନ ତାର ଭ୍ରମହୀନ କୋହ ସେ ।
ବଗୁଳତ ।

---

(୧) ଅଭିରାମସିଂହ ।

ଦ୍ୱିରଦ ଛଳ (୧) ଛନ୍ଧି ମକର । ଅଢପଦ କମଠ (୨) ଅବାର ଚେ ।
ଝଷ (୩) ତୁଲାଣ ଘୋଟକ        ଭୁଜ ଭୁଜଙ୍ଗ ଛଟବ
ବନ୍ଧ ବାର ବାର୍ ହୋଇ ଗ୍ରଜ ।
ବାଧିରେ ହେଳ ଲୋକନ        କରଣ ବୈର ସଇନ
ଦବେ ପଳାଇ ସଂଗ୍ରାମ ଚେଜ ସେ ।

ଅବଶେଷ ।

ନ ମର ଥିଲେ ଯେତେକ ଲୋକ । ନାହିଁ ଉଣ୍ଡିଁ ଏକ ଅଘାଡ଼କ ସେ ।
ରଣଜୟ କରି ବଳେ        ବୀରେନ୍ଦ୍ର ଗଡ଼େ ପଶିଲେ
ଜାଣି ବଗ୍ଧ-ଧଗ୍ର-ନରେଶ ।
ଲଭଣ ଖ୍ୟାତି ଅତ୍ୟନ୍ତ        ମିଳିଲେ ବୀର ଅଗ୍ରତ
ହିଷି ଶରଣ ସଦଣ ହିଷ ନେ ।

ଯଥା ସୁଭ ।

ବାଣୀ ଭଣି ବୋଧିଲେ ମସ୍ତ୍ରଣ । ଅଳ ସ୍ଥଳେ ଶୁଣିମ ସେ ରସ ଦେ ।୫୩।
ବାଳ ବଖଣ୍ଡନକାଷ୍ଠି        ବାଲପଦ ବନଗ୍ରୀରୀ
ଯେ ଗୃରଦଣ ତ୍ରୁବନ ଭନ ।
ମୁନି ମାନସ ମୋହନ        ବାରିଧି ସେତୁ ରଚନ
କୃତ ଯେନ୍ତ ବଳାହକେ ମୁନଃ ସେ ।

ରବୃତ୍ତମ ।

ଶୌତମ-ବାମା-ତାରକ-ପଦ । ମହେଶ୍ୱର ପୂରଣେ ପ୍ରମୋଦ ସେ ।୫୪।



---

(୧) ହାତୀମାନେ । ( ୨ ) କଚ୍ଛପ । ( ୩ ) ମାଛ ।

## ଷଷ୍ଠଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ଶ୍ରବଣ କର ବର-ବିବେକ ନର ବିଦ୍ୟାବତୀ-ନରେଶ ।
ରଚି ପଞ୍ଚମ ଛାନ୍ଦ ବନ୍ଧେ ସ୍ତୁତି ତୋଷି ଅଭିରାମ ପଞ୍ଚାସ୍ୟ ।୧।
ଦନ୍ତପଙ୍କଜିତ ମୂର୍ତ୍ତି କୀରତି ମୂର୍ତ୍ତି ଗମ୍ଭୀର ଯାର ।
ପଛ ଶୀରଶ୍ରିକିର ରଞ୍ଜିତ ଅପଦାନ ସ୍ୱଲକ୍ଷଣବାର ।୨।
କର-ବିଶ୍ରୁତ ଲକ୍ଷିତ ଭାନୁକର ବାହସାର ଶୌମନ୍ଦର ।
ସତ ସ୍ୱଜନର ଦାରକର ଅରୁ ସାରସ୍ୱତ ଧର୍ମ୍ମବର (୧) ।୩।
ଧର୍ମକୃତେ ରତ କି ସୁର ପୂଜିତେ କୃପାଣ-ପ୍ରଭାହତ ।
ଯେ ରଷାର ଦ୍ୱିଜନ୍ମର କୃତଧନ ଭୂପ ଧନୁର୍ଦ୍ଧର କୃତ ।୪।
ପୁନ ଅଷ୍ଟାଳ ବନ୍ଧେ ଛନ୍ଦ ବିନତ ଗିର ଅନୁକୂଳତ ହୋଇ ।
ସ୍ତୁତି ପାଠକ ଯଥା ମସ୍ତିଷ୍କାଳ ପୁରତେ ସ୍ତୁତିକ ଭଣଇଁ ।୫।
ଜମ୍ବୁ ପରରମ୍ଭ-ମାନ ଦାନକାଶ୍ୱ ଧରଣୀ ଧବ ବିଜ୍ଞାନୀ ।
ବିଧି ନନ୍ଦନାନନ ଯା କୀର୍ତ୍ତି କବି କବିକୁଳଚନ୍ଦ୍ର ବର୍ଣ୍ଣି ।୬।
ଆନ ଲଙ୍ଘନେ କେବା ସର୍ବ୍ବିଯୁକ୍ତିଲେ ଷମ ଅବନୀର ଭବ ।
ଯାରକେ ବସୁଦାମୀ ଯେ ଧେନ ପ୍ରଜାପାଳନେ ଜନକ ଇବ ।
ହର ଦର ସାଧୁଜନର ମୋଦକୁ ବିବର୍ଦ୍ଧନ କର ବୀର ।
ଭୂଅମର ସନ୍ଦୋହଳ (୨) ବତ୍ସଳ ସର୍ବଦା ବିଦା ଭୁବନର ।୮।
ସ୍ତୁତି ଭାରତ ଶ୍ରବଣେ କୀରପତି ମାନସୁଁ ତମ ବର୍ଜ୍ଜିତ ।
ଶଶଭୂଷଣ-ଦୂଷଣକାଶ୍ୱ ମୁଖେ ଗୃତଦ୍ୱାସ ପ୍ରକାଶିତ ।୯।
ପ୍ରସନ୍ନ ଗୃଦ୍ଧଁ ଏକାଳେ ଶପ୍ତବ୍ରଜ କରଣ କରକୋଷକ ।
ଜଣାଇଁ ଭୋ ଷ୍ଟର ମାନ ସୁବିନସ୍ତ ଶକ୍ତସ୍ଥେ କର ମୋ ଓକ(୩) ।୧୦

---

୧ । ଧ୍ୱଜା ୨ ସମୂହ ୩ ଘର ।



ପଞ୍ଚମଲ୍ଲନ୍ଦ ବନ୍ଧ ।

| | | | | | | | | | | | | |
|---|---|---|---|---|---|---|---|---|---|---|---|---|
| | | | | | ବ | ନ | ଉ | | | | | |
| | | | | | ବ | ଦା | ଭୂ | | | | | |
| | | | | ସ୍ତ | ଳ | ସ | ଙ୍ଗ | ଦା | | | | |
| | | | ମ | ଉ | ଧଂ | ଦୋ | ଦ୍ବ | ଗ | ଚ | | | |
| | | ବ | ର୍ଦ୍ଧ | ନ | କ | ର | ଣ | ର | ଭୂ | ଅ | | |
| | | | ଜ | ନ | ଉ | ମ୍ନୋ | ଦ | ଲୁ | ବ | | | |
| | | | | ଉ | ଦ | ଉ | ଘା | ଧୂ | | | | |
| | | | ଜେ | ଜ | ଜ | ଜ | ଇ | ବ | ଦ୍ବ | | | |
| | | ଦା | ଙ୍ଗ | ଯେ | ଘେ | ନ | ପ୍ର | ଜ୍ଞା | ଦା | ଳ | | |
| | | | ଢ | ବ | ଯା | ଚ | କ୍ଷେ | ବ | ସ୍ତୁ | | | |
| | | | | ମ | ଅ | ବ | ଙ୍ଗ | ଉ | | | | |
| | | | ବା | ଷ | ତ୍ରି | ଯୁ | ଳୁ | ଲେ | ଷ | | | |
| | | କ୍ର | ବ | ସ୍ତ୍ରି | ଅ | ନ | ଲ | ଘେ | ନେ | ବେ | | |
| | ନ | ପା | ଙ୍କ | ତ୍ରି | କ | ଦ୍ବ | ଜ | ଦ୍ବ | ଦ୍ବ | ବ | ଚ | |
| ଉ | ଣୀ | ଧ | ଦ | ବ | ଜ୍ଞା | ଜ | ଦ୍ବ | ଧୂ | ଜ | ଜ | ନା | ନ |
| ଜ | ସ୍ତ | ପ | ର | ଚ | ଯୁ | ମା | ନ | ଦା | ନ | କା | ସ୍ତ | ଧ |

ଅଟ୍ଟାଳ ବନ୍ଧ

ମିଥିପୁର ଶୋଭା ବିଲୋକିବା ଭାବ କରି ସମ୍ମତ ନାରେଶ ।
କାଙ୍କବା ବାଜ (୧ ଙ)ଘନଙ୍କୁ ଫେଲି ତହୁଁ ବନ୍ଦନ ବିରଚି ବାସ । ୧୧ ।
ଉଦୟ ପାରଣେ ବେହଜନ ଅଂସେ କରବର ଦେଇ ଗାଇ ।
କରନ୍ତେ ଗମନ ମିଥ ମିନ୍ଧଗାଡ଼ ସ୍ୱର୍ଗୈନ୍ୟ ସେନା ସଙ୍ଗରେ ୧୨ ।
ଅଭିରାମ ହୁର ବୃଜସ୍ୱେ ଏ ବାଣୀ ଶ୍ରବଣେ ନଗ୍ର ଯୁବତୀ ।
ସ୍ୱରୂପ ଲୋକନ ଇଚ୍ଛି ଲାଜ ଛାଡ଼ି ମୁହିଁ ପୂର୍ବୁଁ ବାହାରନ୍ତି । ୧୩ ।
ବୀର-ସୁଷମା ଦେଖିଲା କ୍ଷଣି ସୁରଶିର ଲବଇ ନୟନ ।
ଧାଇ ମାତଣେ ସ୍ତମ୍ଭ ତଜ ଉଦ୍ଦନ୍ତି କାଷ୍ଠ ପ୍ରତିମା ଯେସନ । ୧୪ ।
ଜୃମ୍ଭା ପ୍ରକାଶିତ ବ୍ୟାଜେ କେଉଁ ଛାରୁ ଊର୍ଦ୍ଧ୍ୱରେ କରଯୁଗଳ ।
ଛନ୍ଦ ନ ଜାଣିଲ୍ଲ ହୋଇ କୁଚ ଶୋଭା ଦେଖାଇ ଖସାଇ ଚେଲ ।୧୫
କେ ଅସଂଯୋଗିନୀ ନାୟିକା ନାସିକା ଫୁଲାଇ ଅନନ ବିଧୂ ।
ହଲାଇ ଅଳକ ଭାସେ ଏ ପୁଂସର ଯେଉଁ ବାମା ପ୍ରାଣବନ୍ଧୁ । ୧୬ ।
ହୋଇଛୁ ସଜନ କି ତପ କରି ସେ ଜଣା ତ ନ ଗଲା ମୋର ।
ଜାଣିଲେ ଚତୁରଗୁଣେ ତା ସାଧନ୍ତି ଦେବେ କି ନହନ୍ତେ ବର ।୧୭
ସଖୀ କହେ ବ୍ୟର୍ଥ ଅଶାଇ ହେବାର ଦେହାନ୍ତର ବିଶ୍ୱନର ।
ହେଲେ ସୁକୃତ ସୁଧାଭୋଗ ଲଭନ୍ତି ନର ନବୀନା ବିସ୍ତର ।
ମତ୍ତକାଶିନୀ କେ କାମ-ମୋଦେ ମତ୍ତ ବୀର-କାନ୍ତିକି ଅନାଇଁ ।
ବିସ୍ମିନା ଚେତନା ସୁରତ ଲଳନା ହୋଇ ନେତ୍ରାନ୍ତେ ଠାରଇ ।୧୯
କେବଣ ବାରଣଗମନା ସଖୀଙ୍କି କହେ ଏ ନାଗରବର ।
ଅଙ୍କେ ପଲ୍ୟଙ୍କେ ବସିବ ଯେଉଁ ସେମା ସୁଫଳ ଜନମ ତାର । ୨୦
ଇତର ତପ ନାହିଁ ଯା କୁଚ-ଚନ୍ଦ୍ରକାର ହେବେ ଏ ରସିକ ।
ତୋଷିରହ ଲାଭ ସମ କି ଉତାନ୍ତେ ଶୁଣିମ ଯେ ଶୁଣୁବାକ । ୨୧ ।

---

୧ । କାଣ୍ଡ

ଦମ୍ଭ ବଢମ୍ବକର ଶୃରୁ ଅଧରୁଁ ଯେ କରବ ସୁଧାପାନ ।
ପୁନଶ୍ଚ ବୃନ୍ଦ ପୁରନ୍ଦରଙ୍କ ପଦ ତା ପଯୃର ତଳେ ପତନ । ୨୨ ।
ଖୀଷ୍ମଜନତା (୧)ବଧୂମେଳରେ ବାନ୍ଧିବ ଯେ ଝାସି ଥିବଟି ସେନ ।
ସ୍ମବାମଣି-ବକ୍ଷ ପଲ୍ୟଙ୍କ କର ସେ ଶୟନେ ହେବ ଭାଜନ । ୨୩
ମିଶା ଚମ୍ପକ କେତକୀ ଦାମ ଯେଣ୍ଟୁ ଶିବ ଉତ୍ସବ ହବମେ ।
ଶିବେ ଥିବ ଦେଇ ସେ ବନା ଆନ ନ ଭାବବଶେ ବାହୁପାଶେ ।୨୪
ବାନ୍ଧି ଏ ପୁରୁଷେ ଅଙ୍ଗେ ଅଙ୍ଗମେଳ କରିବ, କହ ସଙ୍ଗିନ ।
ପ୍ରାପ୍ତ ଏ ଯୋଗ ହେବ ନ ତାକୁ ଯେ ଅମୃପର ଅଭାଗିନୀ । ୨୫
ଏବାଲେ କଉଁ ଚଭୁଷ୍ଣ ସ୍ନେହାଭୁଷ୍ଣ ବୋଲଇ ରେ ସଖି ଦେଖ ।
ଯୁବତୀକୁଳ ଧଇର୍ଯ୍ୟ ବିନାଶନେ କି ଅବା ଫୁଲବଶିଖ(୨) । ୨୬ ।
ରୂପବନ୍ତ ହୋଇ ବିଜଯ୍ୟେ ଏମନ୍ତ ପ୍ରତେ ହୋଏ ମନେ ମୋର ।
ରଖିବ ନାହିଁ ଜଗତେ ଅଭ୍ ପତି-ବରତ ରମଣୀଙ୍କର । ୨୭ ।
କରତୀ ଭାବଲେ ଆରଣ୍ଡ ହୋଇଲେ ହୋଇବ ବା ଅଭ୍ କସ ।
ନ କଲେ ପ୍ରେୟସୀ ହୁଅନ୍ତାଇଁ ଦାସୀ ସର୍ ତ ଗଲା ବୟସ । ୨୮ ।
ଅଭିରାମ ହର ସୁଷମା ଲୋଚନ କର ସେ ନଗ୍ରତମଣୀ ।
କାମ-ପ୍ରାଭବେ ଅର୍ତ୍ତିହୋଇ ଏମନ୍ତ କହା କହୁ ହେଲେ ବାଣୀ । ୨୯
ବର୍ତ୍ତୁଥିଲେ ସରବାର ତ ନୂହଇ ପ୍ରସଙ୍ଗ ବିବୃତ୍ତି ଛିତେ ।
କେବଳ ସୂତ୍ର ସପକ୍ଷ ବୋଲି ଏତେ ବର୍ଣ୍ଣିଲି ଶୃଣ ଏ ଅନ୍ତେ । ୩୦
ନଗ୍ର ଯୁବତୀଙ୍କି ଉଚାଟ କରାଇ ଅଭିରାମସିଂହ ଯାଇ ।
ମିତ୍ର-ସଦନେ ପରବେଶ ହୁଅନ୍ତେ ମିତ୍ରତାତ ମାନ୍ୟବହୁ । ୩୧ ।
ଅର୍ଘ୍ୟାଦ ଅକ୍ଷତ ବନ୍ଦାପନା କଲେ ସିଂହାସନରେ ବସାଇ ।
ସ୍ୱ ରାଜଛତ୍ର ବାରଣିରେ ଧରାଇ ଚାମର ଚାଳନ ବହୁ । ୩୨ ।
ଭେଟେ ଝହ୍ଣାର ବଳୟକୁଣ୍ଡଳ ବସନ ବାଜୀ କୁଞ୍ଜର ।
ବାଞ୍ଛିବାର-ମାନସ ତୋଷଅର୍ଥେ ଦତ୍ତ କୃତେ ତତପର । ୩୩ ।

୧ । ଗଙ୍ଗା   ୨ । କାମ

ଏକାଳେ ମିତ୍ର-ଜନକ ମୃଣ ଶୁଣି ଅଭିରାମସିଂହ ଭଣି ।
ଅଳ ଦନେ ମିତ୍ରେ ରାଜ ପଦଶାକ ଦତ୍ତ କର ଭୁମ୍ଭେ ପୁଣି । ୩୪।
ଯେ ଆଜ୍ଞା କହ ତତ୍‌କ୍ଷଣେ ମିତ୍ର-ତାତ ରାଜାଭିଷେକ ସମ୍ଭାର ।
ନବାବ କରାଇଣ ସିଂହ ଆସନେ ବସାଇ ଜ୍ୟେଷ୍ଠ କୁମର । ୩୫ ।
ରାଜ ପଦସ୍ଥାକ ଦତ୍ତ କର ତାଙ୍କୁ କରାଇଲେ ଅଭିଷେକ ।
ସେ ଦନୁ ଅଭିରାମ ସିଂହ ଆନ ନ ଲଙ୍ଘନ୍ତି ସେ ରାଜ୍ୟ ଲୋକ ।୩୬।
ମିତ୍ରେ ଅଭିଷେକ କରାଇ ସାରେଶ ପ୍ରେପଣ ଚୂଡୋପବନ ।
ବହୁ ସେ ନଗରପ୍ରାନ୍ତରେ ମିତ୍ର--ସ୍ନେହେ ରହ ତହିଁ କେତେ ଦନ ।୩୭।
ମିହଜନକ ପୂର୍ବେ ରଣକୃତକୁ ସୈନ୍ୟ ଅଣାଇବା ପାଇଁ ।
କରଥିଲେ ଦୂତ ପ୍ରେଷଣ ସେ ସବ ପ୍ରବେଶ ହୋଇଲେ ତହିଁ ।୩୮।
ବରାହଭୂମି-ରାଜ-ତାତ ପୁରତେ କହିଲେ କରନ୍ତୁ ରଣ ।
କା ସଙ୍ଗତରେ କର ଆଜ୍ଞା ଜବରେ ଶୁଣି ସେ ତଳେ କାରଣ ।୩୯
ଗ୍ରାମଶୂକର କୃତ ଯୁଦ୍ଧେ ବରାହ-ଛଦ ଭାଙ୍ଗି ହର-ଙ୍କର ।
ଅଦ୍ୟ ବେଳେ କଲେ ଯୁଦ୍ଧ କ ରକ୍ଷିବ ପ୍ରାଣେ ଏହା ନବଗୃର ।୪୦।
କ୍ଷଣେ ସେ ବଳ ଲଭଣ ଖ୍ରାତକ ବାହୁନ୍ତରେ ଯେ ଯା ପୁର ।
କୀର୍ତ୍ତିବନ୍ତ ତହୁଁ ବୋଧି ମିହତତ୍ତ୍ୱ ବାହୁଡ ନଜ ରାଜ୍ୟର ।
ସବଳ ଯେନ ନଜପୁରେ ପ୍ରବେଶ ହୋଇ ସ୍ୱନଗର ଲୋକର ।
ଦୁରକରାଇ ମାନସ-ତାପ ପ୍ରଜା-ରଞ୍ଜନ କଲେ ବିସ୍ତାର । ୪୨ ।
ନତ ଅସ୍ତ୍ରାନେ ବଜେ ହୋଇ ସାନାର୍ଥି ଶ୍ରବଣ କରନ୍ତେ ଦନେ ।
ଖାତପ୍ରତାପ ଶୁଣି ଅସ୍ତ୍ରାନ ତଳେ ପ୍ରବେଶ ଲବଣା ଜନେ । ୩୪ ।
ଦଣ୍ଡାବୃତେ ରାଜପଦତଳେ ପଡ କରଯୁଗ ଶିରେ ଦେଇ ।
ଭୃଠି ଜଣାଇ ଅମ୍ଭ ବତ୍ତ ଲୁଣ୍ଠନେ ସାହ କରିଛନ୍ତି ରହ । ୪୪ ।
ବସୃଙ୍କର ୍ଲ ସାନାର୍ଥି ଖଣ୍ଡନ- ବାନା ତ ଖରବଳ ।
କ୍ଷଣେ ଅଇଲୁଁ ଅଡ ସାନ ଅମ୍ଭେ ସେ କଷ୍ଟରୁ ଖାଣ୍ଡବର । ୪୫

ଏଥିରେ କଲେ ହେଳା ଗୋଗଣ ସହ ନଷ୍ଟପ୍ରାୟ ଆମ୍ଭ ମରଣ ।
ହୋଇବ ଶ୍ରବଣେ ଏ ଗିର ବୀରେଶ ଶୀଘ୍ରରେ ଧର କୃପାଣ । ୪୬ ।
ଝମକାଇ କହୁ ଏ ଛାର କଥାକୁ ନକର ଚିତ୍ତ ଉଦୟ ।
କାଲି ତୁମ୍ଭଙ୍କୁ ବିକଟ ଘାଟ ପାର କରାଇବି ମୁଁ ନିଶ୍ଚୟ । ୪୭ ।
ମିଳିବେ ଯେବେ ତୁମ୍ଭ ବିଷ୍ଣୁଲୁଣ୍ଠନ ଭୟଙ୍କର ଗଣ ମାନ ।
କୋଟିଏ ହୋଇଲେ ଗୋଟିଏ ଡାହୁଁରୁ ଧରୁ ନ ଯିବେ ଜୀବନ । ୪୮
ଶୁଣି ସେ ଲବଣା ଜନେ ଅତି ମୋଦ ସେ ଦିନ ରଜନୀ ଅନ୍ତେ ।
ମହାରାଜ ଅଶ୍ୱ ଆରୋହି ବାହାର ଦ୍ୱାଦଶ ଜଣ ସଙ୍ଗତେ । ୪୯ ।
କେବଳ ନ ନେଲେ ଚତୁରଙ୍ଗ ବଳ ତୁଚ୍ଛ ଭାବ ଭୟଙ୍କରେ ।
ଲବଣାପନ୍ଥ ପ୍ରବେଶ ହେଲେ ଭୟଙ୍କରେ ସ୍ଥିତ ଯେ ସ୍ଥାନରେ । ୫
ବିଲୋକ ଗୋପଲ ଭୟଙ୍କର କୁଳ ଚନ୍ଦନା ବିଷ୍ଣୁଲୁଣ୍ଠନେ ।
ହୋଇ ଧନୁରେ ଗୁଣ ଦେଇ ଶରଣୀ (୧) ନରୋଧ କଲେ ଜବରେ ୫୧
ଘନେ ଘନ ବନଧାର ବରଷଣ କଲା ପ୍ରାୟେ ବିନ୍ଧୁ ଶର ।
ନଭେ ଅଦୃଶ୍ୟ ହୋଇଲେ ଦିବାକର ଏହା ଶୁଣି ବୀରବର । ୫୨ ।
ଲବଣାପନ୍ଥ ସ୍ୱଜନ ରକ୍ଷି ପଛେ ଅଶ୍ୱ ରକ୍ଷିଲେ ଆଗର ।
ଏକାଳେ କରଯୁଗଳ ଯୋଡ଼ି ଭୂପେ କଣାଇଁଲା କଜ୍ଜିଁ ବୀର । ୫୩
ଏ ବେଗେ ବାଜୀ ମୁଖକର ରକ୍ଷିଲେ ତା ଅଙ୍ଗେ ବାଜିବ ବାଜିବ ।
ଶୁଣି ନୃପ କୋପେ ବଦତି ତୋହର ବଡ ଭୟାକ୍ରୁ ସ୍ୱଭାବ । ୫୪
ଶର ଭେଦ ଯୋଗ ଥିଲେ ଯେଉଁ ବେଗେ ରକ୍ଷିଲେ ନ ବାଜିବ କି ।
ପଳାଇବେ ଜବେ ଡ଼ରିଲୁ ତୁ ମୋତେ ଡ଼ରାଇ କହୁ କାହିଁକି । ୫୫
ଶୁଣି ସେ ବୀର ଭଣି ରଣେ ଭୟାକ୍ରୁ ଅଟେଁ କି ଦାମ୍ଭିକ ମୁହିଁ ।
ବିଲୋକିବା ହେଉ ବୋଲି ସେ ଜଗତଜୀବ ଭବ ଗଢ଼ିବହିଁ । ୫୬
ରେ ରେ କାର ଶବ୍ଦ ଉଚ୍ଚାର ମୁଣ୍ଡରେ କରେ କରବାଳ ଧରୁ ।
ଭୟଙ୍କର ବନେ ପଶି ପାଞ୍ଚ ସାତ ଜନ ଶିରଚ୍ଛେଦ କର । ୫୭ ।

(୧) । ପଥ ।

ଏକଣେର ଚନ୍ତୁଁ ଧର ଆସି ମହାରାଜ ପୁରତରେ ଦେଲ ।
ଏଡ଼କ ଭସ୍ତାନ୍ତୁ ରଣକୁ ଅଟେ ମୁଁ ବୋଲନ୍ତେ ବୀରେଶ କହୁ ।
ଆଳ୍ପୁଁ ହେଲ୍ଲ ତୋ ନାମ ବୈରିଦଳନ ପୁନଃ କଲେ ଆଜ୍ଞା ଦାନ ।
ଗଲ ସବେଁ ଏକମୁଖ ହୋଇ ଭସ୍ତୁଙ୍କରେ କରିବା ନଧନ । ୫୯ ।
ବୋଲି ବରଞ୍ଚି ବୁଲାଇ ରେ ରେ କାର କହୁ ବାଜୀଙ୍କ ଧୂଆଇଁ
ଆଗରେ ଗମନ୍ତେ ଦେଖି ସର୍ବ ବୀରେ ଧାମନ୍ତୁ ଖଡ୍ଗ ଉଞ୍ଚାଇ ।୬୦।
ଭସ୍ତୁଙ୍କର ବଳେ ପଶି ବୀର ଇନ୍ଦ୍ର ବରଛା ପ୍ରଘାତ କହୁ ।
ବିନାଶ କଲେ ସମସ୍ତ ଅବଶେଷ ଜନ ଯେତେ ଥିଲେ ରହୁ ।୬୧।
ଜଣକେ ଦଶ ବଂଶ କଲେ ବିନାଶ ପଦଗ ଦ୍ୱାଦଶ ଜନ ।
କୋଟିଏ ବଳରୁ ଗୋଟିଏ ଉବୁରି ନଗଲେ ଜୀବନେ ଯେନ ।୬୨।
ବୀରେଶ ଅତି ତୋଷ ହୋଇ ସେକାଳେ ପତ୍ରିଜନେ ନାମ ଦେଇ ।
ଜଣ ଜଣକେ ମୁଁ ଯଉଁ ନାମ ପୂର୍ବ ସ୍ଥନେ ପ୍ରକାଶି ଅଛଇଁ । ୬୩ ।
ଭସ୍ତୁଙ୍କର ବଳ ହତ ଶୁଣି ଅତି ପ୍ରମୋଦ ଲବଣା ଜନ ।
ଭୂପେ ଜଣାଇଁ ଆଜ ତବ ପ୍ରସାଦୁଁ ରହିଲା ଆମ୍ଭ ଜୀବନ । ୬୪ ।
ନୋହିଲେ ବିନାଶ କରନ୍ତେ ଆମ୍ଭଙ୍କୁ ଗୋକୁଳ ବିତ୍ତ ସକଳ ।
ନଅନ୍ତେ ଭସ୍ତୁଙ୍କର ବଳ ଭଣି ସେ ନମି ଭୂପ ପଦତଳ । ୬୫ ।
ରଜତ ହେମ ମିଶାଇ ଦ୍ରବ୍ୟମାନ ହଅନ୍ତେ ନରେଶ କହୁ ।
ସବିସ୍ମୃ କୁଳ-ଧର୍ମ ପ୍ରତିପାଳନେ ଭସ୍ତୁଙ୍କରେ ନାଶିଲଇଁ । ୬୬ ।
ଏ ଦ୍ରବ୍ୟମାନ ଭୂମ୍ଭଠାରୁ ନେମାକୁ ସଂଗ୍ରାମ କଲୁ କି ଆସି ।
ଯେନ ଏ ଦ୍ରବ୍ୟ ନର୍ବିଂସ୍ପୃ ପୁରେ ଯାଅ ଅଳ୍ପ ହସି ବୀର ଭାଷି । ୬୭ ।
ଶୁଣି ଲବଣାମାନ ଯେନ ସେ ଦ୍ରବ୍ୟ ମୋଦେ କଲେ ଚନ୍ତୁଁ ଗଣ୍ଠ ।
ଚତୁର୍ଥରେ ହୃଷ୍ଟହତ-ମହାଗ୍ରନ୍ଥ ବାହୁଡ଼ା ବଳକ୍ଷେ କୁଣ୍ଡ । ୬୮ ।
ସ୍ୱ ନଗ୍ରେ ପ୍ରବେଶ ହୋଇ ଅତି ତୋଷ ସ୍ନାନାଦ ଅମରାର୍ଚ୍ଚନ ।
ବିତାଇ ମଣୋହିଁ ଅନ୍ତେ ଅବକାଶ ଅସ୍ଥାନେ ଯୋଦ୍ଧାରତନ ।୬୯।

ଵଚାଣସିନ୍ଧୁ ଚିତ୍ତ ବଶୀ ଭୁଜାରୂଢ଼ାଖଳପଣ ଚୁମ୍ବନେ ।
ମଂକ୍ଲିଷ୍ଟବଢ ଯେ ତା ପଦ ଗୁଣି ମହେଶ୍ୱର ନାଶି ଦନ । ୨୦ ।

—ଃ—

## ସପ୍ତମଛନ୍ଦ ।

ରାଗ— ବିହଷ ଗୁଜ୍ଜରୀ ।

ସୁକୀର୍ତ୍ତିସାର ଭାରତ          ଶ୍ରବଣ କର୍ ସୁମତ
ଶ୍ରୁତ ମତ ମହୋତ୍ସବ କର ହେ ।
ମାପ କୂଳ ହର ହର—          ଅଭିରାମ ଅର-କର-
ଦମ୍ଭ-କୁମ୍ଭ ବରଚୁଁ ବଦାର ହେ । ୧ ।
ଵବର୍ଦ୍ଧନ ବନ ଦେଶ          ପ୍ରଜା-ମାନସ ରଭସ
ଚଳ ଦଳ ଲଙ୍କାଦଳ ପର ହେ ।
କୁମୁଦରେ ତୋଷଶାଳୀ          ବଧିରେ ଯୁକ୍ତ ତାଗଳୀ ।
କର ବଭସି ଲୋକର ପୂର ହେ । ୨ ।
ସୁରବର (୧) ଏକ ଅହେ          ବୃଷ ସଭାରେ (୨) ବଜସ୍ରେ ।
ହୋଇ ବାରରମଣୀ (୩) ନର୍ତ୍ତିକ ହେ ।
ବଲୋକନେ ସାବଧାନ          ଅଡହିଁ ପ୍ରମୋଦ ମନ
ପୂରତ ତହିଁ ବବୁଧମାନ (୪) ହେ ।
ବସନ୍ତ ଚତୁର ଘନେ (୬)          ଦ୍ୱିଜଷ୍ଟଜ(୭)ଉଦ୍ୟମାନେ
କବର (୮) ଛବ ଯହିଁ ଉଦସ୍ୱ ହେ ।
ଅନେକ ମୁଖରୁ(୯) ଘେନ          ପ୍ରକାଶ ହୁଏ ବଚନ

---

୧ ଇନ୍ଦ୍ର. ଖାରଶ୍ରେଷ୍ଠ, ୨ ଇନ୍ଦ୍ରସଭାରେ, ଶ୍ରେଷ୍ଠସଭାରେ, ୩ ବେଶ୍ୟା, ୪ ଦେବତା, ପଣ୍ଡିତ ୫ ଗୃହ, ଚତୁରଲୋକ, ୬ ମେଘ, ଘନଭାବରେ, ୭ ଚନ୍ଦ୍ର, ବ୍ରାହ୍ମଣଶ୍ରେଷ୍ଠ ୮ ଶୁକ୍ର, ଗାସ୍ତୁକାଦ, ୯ ଅନନ୍ତ, ଅନେକ ଲୋକର ମୁଖ ।

ବସ୍ତ୍ରାବୃତ ପଣ ବନ୍ଧରସ୍ଥ ହେ । ୪ ।
ପୁଣ୍ୟଜନ (୧) ଦର୍ପକର (୨) ମେଳତ ତଥି ଏମନ୍ତର
ପୁଣ୍ୟଜନ (୩) ଦର୍ପକର (୪) ରାଜ ହେ ।
ଗନ୍ଧର୍ବ ଶିର ଶିଖଣ୍ଡ— ଅଙ୍ଗୀରଂ ନୃତ୍ୟ ବଶେଷ
ଲୋଚନେ ସର୍ବଲୋଚନ (୫) ଭଜ ହେ । ୫ ।
ସନ୍ଦେଶହର ଏକାଳେ ପ୍ରବେଶ ଆସ୍ଥାନ ତଳେ
ହୋଇଣ କର କୋରକ ଭଙ୍ଗ ଯେ ।
ଅଂଶୁକ (୬) ଗଳେ ଲମ୍ବାଇ ଶଙ୍କିତ ମାନସ ହୋଇ
କମ୍ପିତେ ଏ ବଚନ ପ୍ରସ୍ତର ଯେ । ୬ ।
ହେ ସୁରେନ୍ଦ୍ର ରଣରଙ୍ଗ - ବାରଙ୍କ ଅର୍ତ୍ତିଜନକ-
କେତନ ତବ ଶୁଣି ଶ୍ରୁତିରେ ଯେ ।
ଦାମୋଦର ଭଞ୍ଜଇନ ଲଭି ଅତି ଅଭିମାନ
ପ୍ରାବଣ୍ଣା ଯେଣୁ କୃପାସିନ୍ଧୁରେ (୭) ହେ । ୭ ।
ପ୍ରେକ୍ଷଣ କଲେ ମୋହରେ ଏଥିକ ତବ ଛାମୁରେ
ଜଣାଇବା ପାଇଁ ଏ ଭୃତ୍ୟକୁ ହେ ।
କେଶରୀବର ଅପଣ କୃପାସିନ୍ଧୁରେ ଦାରୁଣ
ବରଚଣ ଭୋଗ କର ତାକୁ ହେ । ୮ ।
ଶୁଣି ଦୂତର ଭାରତୀ ବୀର ମୁକୁନ୍ଦ ବଦତି
କହବ ମୁଁ ତାରେ ବିନଶ୍ୟତି ହେ ।
କାଲି ଅବଶ୍ୟ ତୁ ଯାଇ କହ ଭଞ୍ଜଭୂପେ ଏହି
ଏ ବିଷୟେ ତେଜନ୍ତୁ ସେ ଖ୍ୟାତି ଯେ । ୯ ।

---

୧ ଯକ୍ଷ, ୨ କାମ, ୩ ଧାର୍ମିକ, ୪ ଦାମ୍ଭିକ, ୫ ସୂର୍ଯ୍ୟ, ସମସ୍ତଙ୍କର ଅକ୍ଷି ।
୬ ଲୁଗା, ୭ ମୟୂରଭଞ୍ଜ ରାଜାଙ୍କ ଅଧୀନସ୍ଥ କୃଷ୍ଣା ଜମିଦାର କୂରୁଗା [illegible] ତାଙ୍କର ରାଜ୍ୟ ଥିଲା ।

